## କାର୍ଲ ମାର୍କ୍ସ

# ଜୀବିକା ଚୟନରେ ଜଣେ ଯୁବକର ଅନୁଚିନ୍ତା

ଭାଷାନ୍ତର

**ଅଧ୍ୟାପକ ନୀଳମଣି ସାହୁ**

(ଏହି ଲେଖାଟି ୨୦୦୯ ମସିହା ଜୁନ ମାସରେ ସମଦୃଷ୍ଟି ରେ ପ୍ରକାଶିତ ହୋଇଥିଲା। ସମଦୃଷ୍ଟି ର ସମ୍ପାଦକ ଓ ସମ୍ପାଦନା ମଣ୍ଡଳୀଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଛି।)

[''ଜୀବିକା ଚୟନରେ ଜଣେ ଯୁବକର ଅନୁଚିନ୍ତା'' ("Reflections of a Young Man on the Choice of a Profession") ପ୍ରକାଶନ ପାଇଁ ମାର୍କ୍ସଙ୍କ ଦ୍ୱାରା ଲିଖିତ ଏକ ପ୍ରବନ୍ଧ ନୁହେଁ। ଟ୍ରିଅର୍‌ରେ ଥିବା ରୟାଲ ତୃତୀୟ ଫ୍ରେଡେରିକ୍ ୱିଲିଏମ୍ ଜିମ୍‌ନାସିୟମ୍ (ଉଚ୍ଚ ବିଦ୍ୟାଳୟ) ରେ ପଢୁଥିବା ବେଳେ ତାର ଶେଷ ପରୀକ୍ଷାରେ ୧୮୩୫ର ଅଗଷ୍ଟ ମାସରେ ଏକ ପ୍ରଶ୍ନର ଉତ୍ତର ସ୍ୱରୂପ ସେ ଏହି ପ୍ରବନ୍ଧଟି ଲେଖିଥିଲେ। ପ୍ରଶ୍ନଟି ଥିଲା ପରୀକ୍ଷାର୍ଥୀ ନିଜର ପସନ୍ଦ ମୁତାବକ୍ ଏକ ବିଷୟ ଉପରେ ପ୍ରବନ୍ଧଟିଏ ଲେଖିବେ। ତାର ଉତ୍ତରରେ ମାର୍କ୍ସ ଏହି ପ୍ରବନ୍ଧଟି ଲେଖିଥିଲେ। ଜର୍ମାନ ଭାଷାରେ ଲିଖିତ ମୂଳ ଉତ୍ତରଖାତାଟିରେ ବହୁ

ସ୍ଥାନରେ ଗୁରୁତ୍ୱସୂଚକ ଗାର ଟଣା ଯାଇଛି। ସମ୍ଭବତଃ ଜିମ୍‌ନାସିୟମ୍‌ର ଇତିହାସ ଓ ଦର୍ଶନ ଶିକ୍ଷକ ତଥା ତତ୍‌କାଳୀନ ପ୍ରଧାନ ଶିକ୍ଷକ, ୟୋହାନ ହ୍ୟୁଗୋ ୱିଟେନ୍‌ବାକ୍ ତାହା କରିବା ସଙ୍ଗେ ସଙ୍ଗେ ପ୍ରବନ୍ଧଟି ଉପରେ ଏହି ମନ୍ତବ୍ୟ ଦେଇଛନ୍ତି: ''ନିଶ୍ଚିତ ଭାବରେ ଭଲ। ଚିନ୍ତାର ପ୍ରାଚୁର୍ଯ୍ୟତା ଓ ଉତ୍ତମ ବିଧିବଦ୍ଧ ବର୍ଣ୍ଣନା ଦୃଷ୍ଟିରୁ ଆଦର୍ଶସ୍ଥାନୀୟ ହୋଇଛି। କିନ୍ତୁ ଲେଖକ ଏଠି ମଧ ସେଇ ଭୁଲ କରିଛନ୍ତି ଯାହା ସାଧାରଣ ଭାବେ ତାଙ୍କ ନିଜର ବୈଶିଷ୍ଟ୍ୟ —ସେ ନିରନ୍ତର ପ୍ରାଞ୍ଜଳ ମନୋରମ ଭାଷା ଚାହିଁଛନ୍ତି। ତେଣୁ ଅନେକ ଅଂଶରେ ଯାହା ତଳେ ଗାର ଟଣା ଯାଇଛି ଆବଶ୍ୟକୀୟ ସ୍ୱଷ୍ଟତା ଓ ନିର୍ଦ୍ଦିଷ୍ଟତା, ତଥା ଅନେକ ବେଳେ ଅଲଗା ଅଲଗା ଭାବାଂଶ ସାଙ୍ଗକୁ ପୂରା ପାରାଗ୍ରାଫ୍‌ରେ ସଠିକତାର ଅଭାବ ରହିଛି।''

ଏହି ପ୍ରବନ୍ଧଟିର ଉତ୍ତରଖାତାଟିକୁ ମିଶାଇ ମାର୍କ୍ସଙ୍କର କେବଳ ସାତୋଟି ଉତ୍ତରଖାତା ସୁରକ୍ଷିତ ହୋଇ ରହିଛି: ୧) ଜୀବିକା ଚୟନରେ ଜଣେ ଯୁବକର ଅନୁଚିନ୍ତା, ୨) ଅଗଷ୍ଟସ୍‌ଙ୍କ ରାଜୁତି ସମ୍ପର୍କରେ ଲାଟିନ୍ ଭାଷାରେ ଏକ ପ୍ରବନ୍ଧ, ୩) ଧର୍ମ ସମ୍ପର୍କରେ ଏକ ପ୍ରବନ୍ଧ, ୪) ଅନୁବାଦ ପାଇଁ ଅଦେଖା ଲାଟିନ୍, ୫) ଗ୍ରୀକ୍ ଭାଷାରୁ ଅନୁବାଦ, ୬) ଫରାସୀ ଭାଷାକୁ ଅନୁବାଦ, ଓ ୭) ଗୋଟିଏ ଗଣିତ କାଗଜ। କେବଳ ପ୍ରଥମ ତିନୋଟି ଇଂରାଜି ଭାଷାରେ ପ୍ରକାଶିତ ମାର୍କ୍ସ ଓ ଏଙ୍ଗେଲ୍‌ସ୍‌ଙ୍କ *Collected Works*, Vol. 1 ରେ ପ୍ରକାଶିତ ହୋଇଛି, ଅଥଚ ସବୁଗୁଡ଼ିକ ୧୯୨୯ ରେ ମୂଳ ଭାଷାରେ Marx/Engels, *Historisch-Kritische Gesamtausgabe,* Vol.1 ରେ ପ୍ରକାଶିତ ହୋଇଛି।

ମାର୍କ୍ସ ଭବିଷ୍ୟତରେ ଜଣେ ବିଶ୍ୱବିଖ୍ୟାତ ମଣିଷ ହେବେ ବୋଲି ଏହି ଖାତାଗୁଡ଼ିକୁ ସମ୍ପାଦି ରଖାଯାଇ ନଥିଲା, ସେଥିରେ ଥିବା ନିଜସ୍ୱ ମୂଲ୍ୟ ପାଇଁ ରଖା ଯାଇଥିଲା।

ହାଇସ୍କୁଲର ଶେଷ ବର୍ଷ ପରୀକ୍ଷା ଦେଲା ବେଳକୁ ମାର୍କ୍ସଙ୍କୁ ମାତ୍ର ସତର ବର୍ଷ ହୋଇଥିଲା। କଥାରେ ଅଛି ତୁଳସୀ ଦୁଇ ପତ୍ରରୁ ବାସେ। କେବଳ ପ୍ରବନ୍ଧଟିଏ ଲେଖିବା ପାଇଁ ମାର୍କ୍ସ ଏହି ପ୍ରବନ୍ଧଟିକୁ ଲେଖି ନଥିଲେ, ଏତେ କମ୍ ବୟସରେ ବି ସେ ଏଥିରେ ନିଜ ଜୀବନ-ଦର୍ଶନକୁ ପ୍ରକାଶ କରିଥିଲେ। ମାନବଜାତିର ସେବାରେ ନିଜ ଜୀବନକୁ ଉତ୍ସର୍ଗ କରିବା କଥା ସେ କେବଳ ଲେଖି ନଥିଲେ, ସାରା ଜୀବନ ନିଜକୁ ସେ ସେହି କାର୍ଯ୍ୟରେ ହିଁ ଲଗେଇ ଦେଇ ଥିଲେ। ମାର୍କ୍ସ ଓ ମାର୍କ୍ସବାଦର ଶତ୍ରୁମାନେ ହୁକେ ହୋ ରୀତିରେ ବିଶ୍ୱସାରା ଯେତେ ରଡ଼ି ଛାଡ଼ନ୍ତୁ ନା କାହିଁକି ତାଙ୍କ ତତ୍ତ୍ୱର ସତ୍ୟତା ଦିନକୁ ଦିନ ଅଧିକ ପ୍ରମାଣିତ ହେଉଛି। ତେଣୁ ସେ ତାଙ୍କର ଏହି ପ୍ରବନ୍ଧର ଶେଷ ବାକ୍ୟରେ କହିଲା ଭଳି ବିଶ୍ୱର ଅଗଣିତ ମଣିଷଙ୍କର ଉଷ୍ମ ଅଶ୍ରୁ ଆଜି ତାଙ୍କ ସମାଧିପୀଠ ଉପରେ ଢଳା ଯାଉଛି।

ଆମ ଦେଶରେ ଆଜିକାଲିକାର ପରୀକ୍ଷା ପରିସ୍ଥିତିକୁ ଦୃଷ୍ଟିରେ ରଖି ପରୀକ୍ଷାଖାତାରେ ସେତେବେଳେ ଦିଆ ଯାଇଥିବା ପରୀକ୍ଷକଙ୍କ ମନ୍ତବ୍ୟ ଅନୁଧ୍ୟାନ ଯୋଗ୍ୟ।

ମାନବଜାତି ଉଦ୍ଦେଶ୍ୟରେ ନିଜ ନିଜକୁ ଉତ୍ସର୍ଗ କରିବା ପାଇଁ, ମାନବଜାତିର କଲ୍ୟାଣ ଉଦ୍ଦେଶ୍ୟରେ କାମ କରିବା ପାଇଁ, ମାନବଜାତିର ସୁଖ ମଧ୍ୟରେ ହିଁ ନିଜ ନିଜର ସୁଖକୁ ଖୋଜିବା ପାଇଁ ଆମର ଯୁବକମାନଙ୍କୁ ଏହି ଲେଖାଟି ଅନୁପ୍ରାଣିତ କରୁ।]

ପ୍ରତ୍ୟେକ ପ୍ରାଣୀର କାର୍ଯକଳାପର କ୍ଷେତ୍ର ପ୍ରକୃତି ନିଜେ ହିଁ ସ୍ଥିର କରିଛି। କେଉଁଠି କିଏ ଘୁରି ବୁଲିବ ବା ନ ବୁଲିବ ତାହା ସ୍ଥିର ହୋଇ ସାରିଛି। ସେହି ପରିସୀମା ମଧ୍ୟରେ ହିଁ ପ୍ରାଣୀଟିଏ ଶାନ୍ତିରେ ଘୁରି ବୁଲେ, ତା ବାହାରକୁ ଯିବା ପାଇଁ ଚେଷ୍ଟା କରେନା, ତା

ବାହାରେ ଆଉ କିଛି ଥିବା ବିଷୟରେ ତାର ଧାରଣା ବି ନଥାଏ। ମଣିଷକୁ ମଧ୍ଯ ଈଶ୍ୱର ଏକ ସାର୍ବଜନୀନ ଲକ୍ଷ୍ୟ ଦେଇଛନ୍ତି — ମଣିଷ ଜାତିକୁ ଓ ନିଜକୁ ମହତ୍ କରିବା ଲକ୍ଷ୍ୟ। କିନ୍ତୁ ଏହା କିପରି ହାସଲ କରି ହେବ, ତାର ଉପାୟ ଖୋଜିବା ଦାୟିତ୍ୱ ମଣିଷ ଉପରେ ହିଁ ସେ ଛାଡ଼ି ଦେଲେ। ସମାଜ ଭିତରେ ନିଜ ସହ ଖାପ ଖାଉଥିବା ଭଳି ଏକ ସ୍ଥିତି — ଯେଉଁଠି ଥାଇ ମଣିଷ ନିଜର ଓ ସମାଜର ଉନ୍ନତି କରି ପାରିବ, ସେଭଳି ଏକ ସ୍ଥିତି — ଖୋଜିବା ଦାୟିତ୍ୱ ସେ ମଣିଷ ଉପରେ ହିଁ ଛାଡ଼ି ଦେଲେ।

ସୃଷ୍ଟିର ଅନ୍ୟ ପ୍ରାଣୀମାନଙ୍କ ଅପେକ୍ଷା ମଣିଷ ପକ୍ଷରେ ଏହି ଜୀବିକା ଚୟନ କରିବା ଅଧିକାରଟି ଏକ ମହାନ ସୁଯୋଗ। କିନ୍ତୁ ତା ସଙ୍ଗେ ସଙ୍ଗେ ଏହା ଏପରି ଏକ କାମ ଯାହା ତାର ସାରା ଜୀବନକୁ ନଷ୍ଟ କରି ଦେଇପାରେ, ତାର ସମସ୍ତ ଯୋଜନାକୁ ପଣ୍ଡ କରି ଦେଇପାରେ, ଏବଂ ତାକୁ ଦୁଃଖୀ କରିଦେଇ ପାରେ। ତେଣୁ ଯେଉଁ ଯୁବକ ତାର ବୃତ୍ତିଗତ ଜୀବନ ଆରମ୍ଭ କରିବାକୁ ଯାଉଛି ଏବଂ ନିତାନ୍ତ ଜରୁରି ବିଷୟଗୁଡ଼ିକୁ ଭାଗ୍ୟ ଉପରେ ଛାଡ଼ି ଦେବା ପାଇଁ ଚାହୁଁନି, ଏହି ଚୟନ ବେଳେ ଗଭୀର ଭାବେ ଚିନ୍ତା କରିବା ହେଉଛି ତାର, ନିଶ୍ଚିତ ରୂପେ, ପ୍ରଥମ କର୍ତ୍ତବ୍ୟ।

ପ୍ରତ୍ୟେକଙ୍କ ଦୃଷ୍ଟି ସାମନାରେ ଏକ ଉଦ୍ଦେଶ୍ୟ ରହିଥାଏ, ଯାହା ଅନ୍ତତଃ ପକ୍ଷେ ତାକୁ ମହାନ ଦେଖା ଯାଉଥାଏ। ଏବଂ ବାସ୍ତବରେ ତାହା ମହାନ ହୋଇଥାଏ, ଯଦି ତାର ଅଗାଧ ବିଶ୍ୱାସ,

ତାର ଅନ୍ତଃସ୍ୱର ତାହା କହୁଥାଏ, କାରଣ ଈଶ୍ୱର ଏହି ମରଣଶୀଳ ମଣିଷମାନଙ୍କୁ କୋମଳ ଅଥଚ୍ ଦୃଢ଼ ଭାବେ କହି ପାରୁଥିବା ଜଣେ ମାର୍ଗଦର୍ଶକ ନ ଦେଇ ଏମିତି ଛାଡ଼ି ଦେଇ ନାହାଁନ୍ତି।

କିନ୍ତୁ ଏହି ସ୍ୱର ଅନ୍ୟାନ୍ୟ ସ୍ୱର ଭିତରେ ସହଜରେ ହଜି ଯାଇପାରେ, ଓ ଆମେ ଯାହାକୁ ପ୍ରେରଣା ବୋଲି ଧରି ନେଇଥାଉ ତାହା ହୁଏତ ମୁହୂର୍ତ୍ତକ ପାଇଁ ଜାତ ହୋଇଥାଇ ପାରେ, ଅନ୍ୟ ଏକ ମୁହୂର୍ତ୍ତ ତାକୁ ସମ୍ଭବତଃ ନଷ୍ଟ କରିଦେଇ ପାରେ। ହୁଏତ ଆମର କଳ୍ପନା କେଳି କରୁଥାଇ ପାରେ, ଆମର ଆବେଗ ଆନ୍ଦୋଳିତ ହୋଇଥାଇ ପାରେ, ଆମର ବିଭ୍ରାନ୍ତିପ୍ରସୂତ ରୂପଗୁଡ଼ିକ ଆମ ଦୃଶ୍ୟପଟରେ ଉଭା ହେଇ ଅପସରି ଯାଉଥାଇ ପାରନ୍ତି। ତଥାପି ଆମର ଉଦ୍ଦାମ ପ୍ରବୃତ୍ତି ଯେଉଁ ଆଡ଼କୁ ସଙ୍କେତ ଦିଏ ସେଇ ଆଡ଼କୁ ଆମେ ବେପରୁଆ ହୋଇ ଡେଇଁପଡୁ — ସେଇ ସଙ୍କେତକୁ ଆମେ ଆମ ପାଇଁ ସ୍ୱୟଂ ଈଶ୍ୱରଙ୍କର ସଙ୍କେତ ବୋଲି ଭାବି ନେଇଥାଉ। କିନ୍ତୁ ଯାହାକୁ ଆମେ ଏତେ ଆକୁଳତା ସହ ଆପଣାର କରୁ, କୁଣ୍ଢେଇ ଧରୁ, ପର କ୍ଷଣରେ ହିଁ ତାହା ଘୃଣା ଜାତ କରିଥାଏ ଓ ଆମେ ଆମର ସାରା ସ୍ଥିତିକୁ ଧ୍ୱଂସ ଭିତରେ ପାଇଥାଉ।

ତେଣୁ ଆମ ଜୀବିକା ଚୟନରେ ଆମେ ବାସ୍ତବରେ ଅନୁପ୍ରେରିତ ହୋଇଛେ କି ନା, ପ୍ରକୃତରେ କୌଣସି ଅନ୍ତଃସ୍ୱର ଏହାକୁ ଅନୁମୋଦନ କରିଛି କି ନା, ଏହି ଅନୁପ୍ରେରଣା ଆମର ଭ୍ରମ କି ନୁହେଁ, ଆମେ ଯାହାକୁ ଈଶ୍ୱରଙ୍କ ଆହ୍ୱାନ ବୋଲି ଧରିନେଲେ

ତାହା ଆତ୍ମ-ପ୍ରବଞ୍ଚନା କି ନୁହେଁ ଆମକୁ ଅତି ଗମ୍ଭୀରତା ସହ ଅନୁଧ୍ୟାନ କରିବାକୁ ହେବ। ଖୋଦ୍ ଅନୁପ୍ରେରଣାର ଉତ୍ସର ସନ୍ଧାନ ନକରି ଆମେ ତାକୁ ଚିହ୍ନଟ କିପରି କରି ପାରିବା ?

ଯାହା ମହାନ ତାହା ଦୀପ୍ତିମନ୍ତ ହୋଇଥାଏ, ତାର ଦୀପ୍ତି ଆମ ମନରେ ତା ପାଇଁ ଉଚ୍ଚାକାଂକ୍ଷା ଜାଗ୍ରତ କରି ପାରେ, ଆଉ ଏହି ଉଚ୍ଚାକାଂକ୍ଷା ସହଜରେ ଆମ ଭିତରେ ଅନୁପ୍ରେରଣା, ଅବା ଯାହାକୁ ଆମେ ଅନୁପ୍ରେରଣା ବୋଲି ଧରି ନେଉ ତାକୁ, ସୃଷ୍ଟି କରି ପାରେ। କିନ୍ତୁ ଯାହା ମୁଣ୍ଡରେ ଏହି ଉଚ୍ଚାକାଂକ୍ଷା ରୂପକ ଭୂତ ସବାର ହେଇ ଥିବ, ତାକୁ ଆଉ ଯୁକ୍ତି ଅଟକେଇ ପାରିବନି, ତାହାର ଉଦ୍ଦାମ ପ୍ରବୃତ୍ତି ଯେଉଁ ଆଡ଼କୁ ଅଙ୍ଗୁଳି ଦେଖାଏ, ସେ ସେଇ ଆଡ଼କୁ ବେପରୁଆ ଭାବରେ ଡ଼େଇଁ ପଡ଼େ। ସେ ଆଉ ତା ଜୀବନର ସ୍ଥିତି ଖୋଜି ବୁଲେନା, ତାର ସ୍ଥିତି ଭାଗ୍ୟ, ଆକସ୍ମିକତା ଓ ମୋହ ଦ୍ୱାରା ସ୍ଥିରିକୃତ ହୋଇଥାଏ।

ଯେଉଁ ସ୍ଥିତି ଆମକୁ ନିହାତି ଉତ୍କୃଷ୍ଟ ଧରଣର ସୁବିଧାସୁଯୋଗ ଦିଏ, ତାକୁ ବି ଗ୍ରହଣ କରିବା ପାଇଁ ଆମକୁ ଆହ୍ୱାନ କରା ଯାଉନି ; ଯେଉଁ ସ୍ଥିତିରେ ବର୍ଷ ବର୍ଷ ଧରି ବହୁ ବର୍ଷ ରହିଲେ ବି ସମ୍ଭବତଃ ତାହା କେବେ ବି ଆମକୁ କ୍ଳାନ୍ତ କରିବନି, ଆମ ଉତ୍ସାହରେ ଭଟା ପଡ଼ିବନି, ଆମ ଆଗ୍ରହର ତୀବ୍ରତାରେ ଶିଥିଳତା ଦେଖା ଦେବନି, ଅଥଚ୍ ଯେଉଁଠି ଆମ ଇଚ୍ଛା ପୂରଣ ହେଉ ନଥିବା ଦେଖିବା ପାଇଁ, ଆମର ଚିନ୍ତା ଫଳବନ୍ତ ହେଉ ନଥିବା ଦେଖିବା ପାଇଁ ବେଶି ସମୟ

ଲାଗିବନି, ତେଣୁ ଆମେ ଈଶ୍ୱରଙ୍କ ବିରୁଦ୍ଧରେ ଯିବା ଓ ମାନବଜାତିକୁ ଅଭିଶାପ ଦେବା।

କୌଣସି ଏକ ନିର୍ଦ୍ଦିଷ୍ଟ ଜୀବିକା ପାଇଁ ଆମର ତୀବ୍ର ଆଗ୍ରହକୁ କେବଳ ଉଚ୍ଚାକାଂକ୍ଷା ହଠାତ୍ ଜାଗ୍ରତ କରି ନଥାଇ ପାରେ; ଆମେ ହୁଏତ ଆମ କଳ୍ପନାରେ ତାକୁ ଚାକଚକ୍ୟବନ୍ତ, ସୁନ୍ଦର କରିଥାଇ ପାରୁ, ଏତେ ଚାକଚକ୍ୟବନ୍ତ, ଏତେ ସୁନ୍ଦର ଯେ ଦେଖାଯିବ ଜୀବନ ଯେମିତି ତାଠାରୁ ବଳି ଆଉ କିଛି ଆମକୁ ଦେଇ ପାରିବନି। ଆମେ ତାର ବିଶ୍ଲେଷଣ କରିନେ, ଆମ ଉପରେ ନ୍ୟସ୍ତ କରା ଯାଉଥିବା ପୂରା ବୋଝଟିକୁ, ମହାନ ଦାୟିତ୍ୱକୁ ବିଚାର କରିନେ। ଆମେ କେବଳ ତାକୁ ଦୂରରୁ ଦେଖିଛେ, ଆଉ କଥାରେ ଅଛି: ଦୂର ପର୍ବତ ସୁନ୍ଦର।

ଏଇଠି ଆମର ନିଜର ବୁଦ୍ଧି ଆମର ପରାମର୍ଶଦାତା ହେଇ ନପାରେ; କାରଣ ଆବେଗଜନୀତ ବିଭ୍ରାନ୍ତି ତଥା ଅତ୍ୟଧିକ କଳ୍ପନାରେ ବୁଡି ଅନ୍ଧ ହୋଇଯାଇ ଥିବା ଯୋଗୁଁ ଏହା ପଛରେ ନା ଅନୁଭୁତି ଥାଏ ନା ପ୍ରଗାଢ଼ ନୀରିକ୍ଷଣ। ତେବେ ଆମେ କାହା ଆଡ଼କୁ ଦୃଷ୍ଟି ନିକ୍ଷେପ କରିବା? ଆମର ବୁଦ୍ଧି ଆମକୁ ତ୍ୟାଗ କରି ଦେଇଥିବା ବେଳେ ଆମକୁ ସମର୍ଥନ କରିବ ବା କିଏ?

ଆମର ପିତାମାତା, ଯେଉଁମାନେ ଜୀବନର ପଥକୁ ଅତିକ୍ରାନ୍ତ କରବା ସଙ୍ଗେ ସଙ୍ଗେ ନିୟତିର କଠୋରତାକୁ ଅନୁଭବ କରିଛନ୍ତି — ଉତ୍ତରରେ ଏହା ହିଁ ଆମର ହୃଦୟ ଆମକୁ କହେ।

ତଥାପି ଯଦି ଆମର ଆଗ୍ରହ ଅଟଳ ହୋଇ ରହୁଛି — ଅଣ୍ଡା ଦିମାକ୍‌ରେ ତାର ଅନୁଧ୍ୟାନ କରିବା ପରେ, କେତେ ବଡ଼ ବୋଝ ତାହା ଦେଖିବା ପରେ, ଅସୁବିଧା ସବୁ କଅଣ ସେଗୁଡ଼ିକ ସହ ପରିଚିତ ହେଇ ସାରିବା ପରେ ବି — ଯଦି କୌଣସି ଏକ ଜୀବିକାକୁ ଆମେ ଆହୁରି ଭଲପାଇ ବସିଛେ ଏବଂ ବିଶ୍ୱାସ କରୁଛେ ଯେ ତା ପାଇଁ ହିଁ ଆମକୁ ଆହ୍ୱାନ ଆସିଛି, ତେବେ ଆମେ ତାକୁ ଗ୍ରହଣ କରିନେବା ଉଚିତ, କାରଣ ସେତେବେଳେ ଆମର ଆଗ୍ରହ ଆମକୁ ବିଭ୍ରାନ୍ତିଗ୍ରସ୍ଥ କରି ନଥିବ କି ଆମର ଅତି ତରବରିଆପଣ ଆମକୁ ଅବାଟରେ ନେଇ ନଥିବ।

କିନ୍ତୁ ଯେଉଁ ସ୍ଥିତି ପାଇଁ ଆମକୁ ଡାକରା ଆସିଛି ବୋଲି ଆମେ ବିଶ୍ୱାସ କରୁ ତାହା ପାଇବାରେ ଆମେ ସର୍ବଦା ସଫଳ ହେଇ ନଥାଉ: ସମାଜ ମଧ୍ୟରେ ଆମର ସମ୍ପର୍କ ସବୁକୁ ଆମେ ନିଜେ ନିର୍ଦ୍ଧାରଣ କରିବା ସ୍ଥିତିରେ ରହିବା ପୂର୍ବରୁ ସେଗୁଡ଼ିକର ପ୍ରତିଷ୍ଠା କେତେକାଂଶରେ ଆରମ୍ଭ ହୋଇ ସାରିଥାଏ।

ଆମର ନିଜର ଶାରୀରିକ ଗଠନ ଅନେକ ବେଳେ ଆମର ଅବାଞ୍ଛନୀୟ ପ୍ରତିବନ୍ଧକ ହୋଇଥାଏ ଓ ତାହାର ଏହି ସତ୍ୟତାକୁ ନେଇ କେହି ଯେପରି ବିଦ୍ରୁପ ନ କରନ୍ତି।

ଏହା ସତ ଯେ ଏହାକୁ ଅତିକ୍ରମ କରି ଆମେ ଉପରକୁ ଉଠି ପାରୁ, ହେଲେ ସେତେବେଳେ ଆମର ପତନ ଆହୁରି ଦ୍ରୁତ ହୋଇଥାଏ, କାରଣ ସେତେବେଳେ ଆମେ ଧ୍ୱଂସାଭିମୁଖୀ ବସ୍ତୁକୁ

ଗଢ଼ି ତୋଳିବା ଦୁଃସାହସ କରିଥାଉ, ସେତେବେଳେ ଆମର ସାରା ଜୀବନଟା ମାନସୀକ ଓ ଶାରୀରିକ ଉପାଦାନଗୁଡ଼ିକ ମଧ୍ୟରେ ଅହରହ ଚାଲୁଥିବା ଏକ ଦୁଃଖଦାୟକ ସଂଘର୍ଷ ଭିତରେ ହିଁ କଟେ। କିନ୍ତୁ ସିଏ ଯିଏ ତା ନିଜ ଭିତରେ ଥିବା ଲଢୁଆ ଉପାଦାନଗୁଡ଼ିକୁ ମନେଇ ପାରିବନି, ତେବେ ସେ ଜୀବନରେ ମାନସିକ ଉତ୍ତେଜନା ରୂପକ ଝଡ଼ଝଞ୍ଜାକୁ କିପରି ବା ସମ୍ଭାଳିବ, ପ୍ରଶାନ୍ତ ଚିତ୍ତରେ କାମ କେମିତି ବା କରିବ? ପ୍ରଶାନ୍ତିରୁ ହିଁ ତ ଜାତ ହୋଇଥାଏ ମହାନ ଓ ସୁକ୍ଷ୍ମ କାମମାନ ଓ ତାହା ହିଁ ହେଉଛି ସେଇ ଜମି ଯହିଁରେ ପାଚିବା ଫଳ ହୃଷ୍ଟ ପୁଷ୍ଟ ହୋଇ ବଢ଼େ ଓ ପାଚେ।

ଆମ ଜୀବିକା ସହ ଖାପ ଖାଉ ନଥିବା ଶାରୀରିକ ଗଠନ ନେଇ ଯଦିଚ୍ ଆମେ ଦୀର୍ଘ କାଳ ଧରି କାମ କରି ପାରିବାନି, ସୁଖ ବି ସେଥିରୁ କ୍ୱଚିତ୍ ପାଇବା, ତଥାପି କର୍ତ୍ତବ୍ୟ ପାଇଁ ଆମର ସୁଖକୁ ବଳିଦାନ ଦେବା ପାଇଁ, ଦୁର୍ବଳ ହୋଇଥିବା ସତ୍ୱେ ବଳ ଖଟେଇ କାମ କରିବା ପାଇଁ ଭାବନା ମନରେ ନିରନ୍ତର ଜାଗ୍ରତ ହୋଇଥାଏ। କିନ୍ତୁ ଆମେ ଯଦି ଏପରି ଏକ ଜୀବିକା ବାଛିଛେ ଯା ପାଇଁ ଆମ ପାଖେ ଧୀଶକ୍ତି ନାହିଁ, ତେବେ କେବେହେଁ ଆମେ ତାକୁ ମର୍ଯ୍ୟାଦାର ସହ ସମ୍ପାଦନ କରି ପାରିବାନି, ଅବିଳମ୍ବେ ଲଜ୍ଜାର ସହ ଆମେ ଆମର ଅକ୍ଷମତା ଅନୁଭବ କରିବା ଓ ନିଜକୁ କହିବା ଯେ ଆମେ ହେଉଛୁ ସୃଷ୍ଟିର ଅପାରଗ ମଣିଷ, ସମାଜର ସଦସ୍ୟ ଯେଉଁମାନେ ନିଜର ପେଷା ତୁଲେଇବାରେ ଅକ୍ଷମ। ତାପରେ ନିହାତି ସ୍ୱାଭାବିକ

ପରିଣତି ହେଉଛି ଆତ୍ମ-ଘୃଣା, ଆଉ କେଉଁ ଅନୁଭବ ତା ଠାରୁ ବଳି ଅଧିକ ଦୁଃଖଦାୟକ ଅଥଚ୍ ବାହ୍ୟ ଜଗତ ଯୋଗେଇ ଦେଉଥିବା ସମସ୍ତ କଥା ତାକୁ ଭରଣା କରିବାରେ କମ୍ ସକ୍ଷମ? ଆତ୍ମ-ଘୃଣା ହେଉଛି ଏପରି ଏକ ସାପ ଯାହା ନିରନ୍ତର ମଣିଷର ଛାତିକୁ ଦାନ୍ତାଏ, ହୃଦୟରୁ ପ୍ରାଣ ସ୍ୱରୂପ ରକ୍ତକୁ ଶୋଷି ନିଏ ଏବଂ ସେଥିରେ ମାନବ ଜାତି ପ୍ରତି ଘୃଣା ରୂପକ ବିଷ ଓ ହତାଶା ଭରି ଦିଏ।

ଆମେ ପୁଙ୍ଖାନୁପୁଙ୍ଖ ଭାବେ ବିଚ଼ାର କରିଥିବା ଏକ ଜୀବିକା ପାଇଁ ଆମର ଧୀଶକ୍ତିକୁ ନେଇ କୌଣସି ପ୍ରକାର ବିଭ୍ରାନ୍ତକର ଧାରଣା ହେଉଛି ଏକ ତ୍ରୁଟି, ଯାହା ତାହାର ପ୍ରତିଶୋଧ ଖୋଦ୍ ଆମ ଉପରେ ନେଇଥାଏ ଏବଂ ଏହା ବାହ୍ୟ ଜଗତର ନିନ୍ଦା ହାବୁଡ଼ରେ ପଡ଼ି ନଥିଲେ ବି, ତା ଠାରୁ ବଳି ଭୟଙ୍କର ଯନ୍ତ୍ରଣା ମଣିଷର ହୃଦୟରେ ଜାତ କରିଥାଏ।

ଆମେ ଯଦି ଏହି ସବୁ କଥାର ବିଚ଼ାର କରି ସାରିଛେ ଓ ଆମ ପସନ୍ଦ ମୁତାବକ୍ ଜୀବିକା ଚୟନ କରିବା ପାଇଁ ଆମମାନଙ୍କର ପରିସ୍ଥିତି ଯଦି ଆମକୁ ସୁଯୋଗ ଦେଉଛି, ତେବେ ଚରମ ଉତ୍କର୍ଷତାର ଭରସା ଯେଉଁଟା ଦେଉଛି ଆମେ ତାକୁ ଗ୍ରହଣ କରିପାରୁ। ଆମେ ଗ୍ରହଣ କରିପାରୁ ତାକୁ — ଯାହାର ଭିତ୍ତି ହେଉଛି ଏପରି ଧାରଣାମାନ ଯାହାର ସତ୍ୟତା ଆମର ସମ୍ପୂର୍ଣ୍ଣ ହୃଦ୍‌ବୋଧ ହୋଇଛି, ଯାହା ମାନବଜାତି ପାଇଁ କାମ କରିବା

ଉଦ୍ଦେଶ୍ୟରେ ଆମକୁ ସମ୍ପୂର୍ଣ୍ଣ ସୁଯୋଗ ଦେବ, ଯାହା ଆମ ପାଇଁ ସେଇ ସୁଯୋଗ ଆଣି ଦେବ ଯାହା ଦ୍ୱାରା ଆମେ ସେଇ ସାଧାରଣ ଲକ୍ଷ୍ୟ — ପରିପୂର୍ଣ୍ଣତା — ର ପାଖାପାଖି ହୋଇ ପାରିବା, ଯାହାର ପାଖାପାଖି ହେବା ପାଇଁ ପ୍ରତ୍ୟେକଟା ଜୀବିକା ଏକ ମାଧ୍ୟମ ଛଡା ଆଉ କିଛି ନୁହେଁ।

କେବଳ ତାହା ହିଁ ମୂଲ୍ୟବାନ, ଯାହା ମଣିଷକୁ ଉତ୍କୃଷ୍ଟରୁ ଉତ୍କୃଷ୍ଟତର କରିଥାଏ, ଯାହା ତାହାର ସମସ୍ତ କାର୍ଯ୍ୟକଳାପ ଓ ଉଦ୍ୟମକୁ ମହତତର କରିଥାଏ, ଯାହା ତାକୁ ଅଭେଦ୍ୟ କରିଥାଏ, ଯାହା ଯୋଗୁଁ ସେ ଜନଗଣଙ୍କର ପ୍ରଶଂସାର ପାତ୍ର ହୋଇଥାଏ ଓ ଯାହା ତାକୁ ସେମାନଙ୍କ ଠାରୁ ଊର୍ଦ୍ଧ୍ୱରେ ରଖିଥାଏ।

ମୂଲ୍ୟବାନ — ଏହାର ଭରସା କେବଳ ସେଇ ଜୀବିକା ଦେଇ ପାରିବ ଯହିଁରେ ଆମେ କାହାର ହାତବାରସୀ ନ ହୋଇ ନିଜ କ୍ଷେତ୍ରରେ ସ୍ୱାଧୀନ ଭାବରେ କାମ କରି ପାରୁଥିବା। ଏହାର ଭରସା କେବଳ ସେଇ ବୃତ୍ତି ଦେଇ ପାରିବ ଯାହା କୌଣସି ନିନ୍ଦନୀୟ କାର୍ଯ୍ୟ — କେବଳ ଏମିତି ବାହାରୁ ଦେଖିବା ପାଇଁ ନିନ୍ଦନୀୟ ହୋଇ ଥିଲେ ବି ସେଭଳି କାର୍ଯ୍ୟ — କରିବା ପାଇଁ ଆମକୁ ବାଧ କରେନା। ଏହାର ଭରସା କେବଳ ସେଇ ପେଷା ଦେଇ ପାରିବ ଯାହାକୁ ଅତି ଉତ୍ତମ ମଣିଷମାନେ ଉଦାରତାଭରା ଗର୍ବର ସହିତ ଅନୁସରଣ କରି ପାରିବେ। ଯେଉଁ ଜୀବିକା ଏହି

ଭରସା ସର୍ବୋତ୍ତମ ମାତ୍ରାରେ ଦେଇଥାଏ ହୁଏତ ସର୍ବଦା ଉଚ୍ଚତମ ହୋଇ ନଥାଇ ପାରେ, କିନ୍ତୁ ସର୍ବଦା ପସନ୍ଦ ଦୃଷ୍ଟିରୁ ଯୋଗ୍ୟତମ।

କିନ୍ତୁ ଯେଉଁ ବୃତ୍ତି ମୂଲ୍ୟବାନ ହେବା ଭରସା ନଦେଇ କେବଳ ମାତ୍ର ଏକ ବୃତ୍ତି ହୋଇଥାଏ, ଆମର ଅଧୋଗତି କରାଏ। ଗୋଟିଏ ପେଷାର — ଯାହାର ଭିତ୍ତି ଭ୍ରାନ୍ତଧାରଣା ଉପରେ ପର୍ଯ୍ୟବେଷିତ ବୋଲି ଆମେ ପରେ ଜାଣିବା, ତାହାର — ବୋଝରେ ଆମେ ଚାପି ହୋଇଯିବା।

ସେଇଠି ଆମକୁ ଆତ୍ମ-ପ୍ରବଞ୍ଚନାରେ ପଡ଼ିବା ଛଡ଼ା ଅନ୍ୟ କୌଣସି ବାଟ ନଥାଏ, ଏବଂ ତାହା କି ସାଂଘାତିକ ନିରାପତ୍ତା ଯାହା ନିଜ ପ୍ରତି ବିଶ୍ୱାସଘାତକତାରୁ ପ୍ରାପ୍ତି ହୋଇଥାଏ!

ବାସ୍ତବ ଜୀବନ ସହ ସେତେଟା ଜଡ଼ିତ ନଥାଇ ଭାବାତ୍ମକ ସତ୍ୟ ସହ ସମ୍ପର୍କ ରଖୁଥିବା ପେଷାଗୁଡ଼ିକ, ନୀତିରେ ସ୍ଥିର ହୋଇ ନଥିବା, ବିଶ୍ୱାସରେ ଦୃଢ଼ ଓ ଅଟଳ ହୋଇ ନଥିବା ଯୁବକମାନଙ୍କ ପାଇଁ ମହା ବିପଜ୍ଜନକ। ତା ସତ୍ତ୍ୱେ ବି ସେଗୁଡ଼ିକ ନିହାତି ଗୌରବମୟ ଜଣା ପଡ଼େ — ଯଦି ଆମ ହୃଦୟରେ ଦୃଢ଼ ଭାବେ ଜମେଇ ବସି ରହିଥାନ୍ତି ଏବଂ ସେଗୁଡ଼ିକରେ ଥିବା ଧାରଣାଗୁଡ଼ିକ ପାଇଁ ଆମେ ଆମର ଜୀବନ ଓ ଆମର ସମସ୍ତ ଉଦ୍ୟମକୁ ବଳିଦାନ ଦେବା ପାଇଁ ସକ୍ଷମ।

ସେଗୁଡ଼ିକ ସେହି ମଣିଷଟି ଉପରେ ସୁଖଶାନ୍ତି ଢାଳି ଦେଇ ପାରନ୍ତି ଯଦି ସେଗୁଡ଼ିକ ପାଇଁ ତାହା ପାଖେ ଯୋଗ୍ୟ ବୁଦ୍ଧି ବୃତ୍ତି ଥାଏ, ଅଥଚ଼ ଯିଏ କ୍ଷଣିକ ଉତ୍ତେଜନାର ଅଧୀନ ହୋଇ, ବିନା ବିଚ଼ାରରେ, ତରବର ହୋଇ ସେଗୁଡ଼ିକୁ ଗ୍ରହଣ କରିଥାଏ ତାକୁ ଧ୍ୱଂସ କରି ଦିଅନ୍ତି।

ଅନ୍ୟ ପକ୍ଷରେ, ଯେଉଁ ଧାରଣାଗୁଡ଼ିକ ଆମ ପେଷାର ଭିତ୍ତି ସେଗୁଡ଼ିକ ପାଇଁ ଆମର ଉଚ୍ଚ ସମ୍ମାନ ସମାଜରେ ଆମ ପାଇଁ ଉଚ୍ଚତର ପ୍ରତିଷ୍ଠା ଆଣି ଦେଇଥାଏ, ଆମର ମୂଲ୍ୟ ବଢ଼େଇ ଥାଏ ଓ ଆମର କାର୍ଯ୍ୟାବଳୀକୁ ବିରୋଧ, ପ୍ରତିବାଦର ଊର୍ଦ୍ଧ୍ୱକୁ ନେଇଥାଏ।

ଅତି ମୂଲ୍ୟବାନ ମଣୁଥିବା ଏକ ପେଷାକୁ ବାଛିଥିବା ଜଣେ ଲୋକ ତାହା ପାଇଁ ସେ ଅଯୋଗ୍ୟ ବୋଲି ମନରେ ଧାରଣା ଜାତ ହେବା ମାତ୍ରେ ଥରି ଉଠିବ; ତଥାପି ଏହା ଧରି ନିଆଯାଇ ପାରେ ଯେ ସମାଜରେ ତାର ସ୍ଥିତି ମହତ୍ ହେଇଥିବା ଯୋଗୁଁ, ସେ ହୁଏତ ମହତ୍ ଭାବରେ କାର୍ଯ୍ୟ କରିବ।

କିନ୍ତୁ ବୃତ୍ତିଟିଏ ଚ଼ୟନ କଲା ବେଳେ ମାନବ ଜାତିର କଲ୍ୟାଣ ଓ ଆମ ନିଜର ପରିପୂର୍ଣ୍ଣତା ହିଁ ଆମର ମୁଖ୍ୟ ମାର୍ଗଦର୍ଶକ। ଏହା ଭାବିବା ଉଚ଼ିତ ନୁହେଁ ଯେ ଏ ଦୁଇଟିର ସ୍ୱାର୍ଥ ହୁଏତ ପରସ୍ପରବିରୋଧୀ ହୋଇପାରେ, ଗୋଟିଏ ଅନ୍ୟଟିକୁ ଧ୍ୱଂସ କରିବାକୁ ପଡ଼ି ପାରେ; ଓଲଟି, ମଣିଷର ସ୍ୱଭାବ ଏପରି ଭାବରେ ଗଠିତ ଯେ କେବଳ ମଣିଷ ଜାତିର ପରିପୂର୍ଣ୍ଣତା ପାଇଁ, କେବଳ

ମଣିଷ ଜାତିର ଭଲ ପାଇଁ କାମ କରିବା ଭିତ୍ତିରେ ହିଁ ସେ ନିଜର ପରିପୂର୍ଣ୍ଣତା ପ୍ରାପ୍ତ କରିପାରେ।

ଯଦି ସେ କେବଳ ତା ନିଜ ପାଇଁ କାମ କରନ୍ତି, ସମ୍ଭବତଃ ସେ ଜଣେ ବିଖ୍ୟାତ ପଣ୍ଡିତ, ଜଣେ ମହା ବିଜ୍ଞ ବ୍ୟକ୍ତି, ଜଣେ ଉତ୍କୃଷ୍ଟ କବି ହୋଇ ପାରନ୍ତି, କିନ୍ତୁ ସେ କେବେ ହେଁ ପରିପୂର୍ଣ୍ଣ ହୋଇ ପାରିବେନି, ସତରେ ଜଣେ ବଡ଼ ମଣିଷ ହୋଇ ପାରିବେନି।

ଯେଉଁମାନେ ସାଧାରଣ ଲୋକଙ୍କ ପାଇଁ ଭଲ କାମ କରି ନିଜନିଜକୁ ଗୌରବାନ୍ୱିତ କରିଛନ୍ତି କେବଳ ସେମାନଙ୍କୁ ଇତିହାସ ମହାନ ବୋଲି କହିଥାଏ; ଯେଉଁମାନେ ଅଧିକରୁ ଅଧିକ ସଂଖ୍ୟକ ଲୋକଙ୍କୁ ସୁଖ ଦେଇଛନ୍ତି, ସେଇମାନେ ହିଁ ସମସ୍ତଙ୍କ ଠାରୁ ବଳି ସୁଖୀ ବୋଲି ଅଭିଜ୍ଞତା ପ୍ରଶଂସା ଢାଳିଥାଏ; ଖୋଦ ଧର୍ମ ଏହା ଶିକ୍ଷା ଦିଏ ଯେ ସେହି ଆଦର୍ଶ ବ୍ୟକ୍ତି ଯାହାକୁ ସମସ୍ତେ ଅନୁକରଣ କରିବା ପାଇଁ ଚେଷ୍ଟିତ, ମାନବ ଜାତି ନିମନ୍ତେ ନିଜକୁ ଉତ୍ସର୍ଗ କରି ଦେଇଥିଲେ, ଏବଂ ଏହି ଭଳିଆ ନିର୍ଣ୍ଣୟଗୁଡ଼ିକୁ ବାଜେ କଥା ବୋଲି କହି ଦେବା ପାଇଁ କିଏ ବା ସାହସ କରିବ?

ଯଦି ଆମେ ଜୀବନରେ ସେଇ ସ୍ଥିତିକୁ ବାଛି ନେଇଛେ ଯେଉଁଠି ରହି ଆମେ ମୁଖ୍ୟତଃ ମାନବଜାତି ପାଇଁ କାମ କରି ପାରିବା, ତେବେ କେତେ ବଡ଼ ବୋଝ ହେଲେ ବି ଆମ ଅଣ୍ଟା ଭାଙ୍ଗି ଦେଇ ପାରିବନି, କାରଣ ତାହା ହେଲା ସମସ୍ତଙ୍କ ହିତ ପାଇଁ ଆତ୍ମବଳିଦାନ ପରେ ଆମେ ଆଉ ତୁଚ୍ଛ, ସୀମିତ, ସ୍ୱାର୍ଥପର ଆନନ୍ଦ

ଅନୁଭବ କରିବାନି, ଅଥଚ୍ ଆମ ସୁଖ ହେବ କୋଟି କୋଟି ମଣିଷର ସୁଖ, ଆମର କାମମାନ ଅଲକ୍ଷିତ ଭାବରେ ବଞ୍ଚିରହି ନିରନ୍ତର ଭାବରେ କାମ କରି ଚାଲିଥିବେ, ଏବଂ ଆମ ଭସ୍ମ ଉପରେ ମାନ୍ୟ ଗଣ୍ୟ ଲୋକଙ୍କର ଉଷ୍ମ ଅଶ୍ରୁ ଢଳା ହେଉଥିବ।

# ବାନରରୁ ମଣିଷକୁ ବିବର୍ତ୍ତନ ଧାରାରେ ଶ୍ରମର ଭୂମିକା

## ଫ୍ରେଡେରିକ୍ ଏଙ୍ଗେଲ୍ସ୍

ଭାଷାନ୍ତର

**ଅଧ୍ୟାପକ ନୀଳମଣି ସାହୁ**

(ଏହି ଲେଖାଟି *ସମଦୃଷ୍ଟି* (ଭାଗ ୩, ସଂଖ୍ୟା ୨୧ ଓ ୨୨, ମଇ ୨୦୦୯) ରେ ପ୍ରକାଶିତ ହୋଇଥିଲା। ତେଣୁ *ସମଦୃଷ୍ଟି* ର ସମ୍ପାଦକ ସୁଧୀର ପଟନାୟକ ଓ *ସମଦୃଷ୍ଟି* ପରିବାର ଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଛି। ୧୯୧୭ ମସିହାରେ ଅତି ସୀମିତ ସଂଖ୍ୟାର ଏକ ସଂସ୍କରଣ **ସହିଦ ଭଗତ ସିଂ ବିଚାର ମଞ୍ଚ**, ଭୁବନେଶ୍ୱର ଦ୍ୱାରା ପ୍ରକାଶିତ ହୋଇଥିଲା।)

(ୱିଲ୍‌ହେଲ୍ମ ଲିବ୍‌କ୍ନେଖଟ୍ ଏଙ୍ଗେଲ୍ସ୍‌ଙ୍କ ନିକଟକୁ ଲେଖିଥିବା ତା ଜୁନ୍ ୧୦, ୧୮୭୬ର ଚିଠିରୁ ଯାହା ଜଣାପଡ଼େ ଏଙ୍ଗେଲ୍ସ୍ ଏହି ପ୍ରବନ୍ଧଟିକୁ ୧୮୭୬ ମସିହାର ମଇ ଓ ଜୁନ ମାସ ମଧ୍ୟରେ ରଚନା କରିଥିଲେ। ସେ ଏହି ପ୍ରବନ୍ଧଟିକୁ

ମୂଳତଃ ଅନ୍ୟ ଏକ ବିସ୍ତୃତ ଗ୍ରନ୍ଥର ଭୂମିକା ଭାବେ ଲେଖିଥିଲେ। ସେହି ଗ୍ରନ୍ଥଟିର ନାମକରଣ କରିଥିଲେ *Die drei Grundformen der Knechtschaft (Three Basic Forms of Slavery, ଦାସପ୍ରଥାର ତିନୋଟି ମୂଳ ଆକାର)*। ପରେ ସେ ଏହି ନାମକୁ ବଦଳେଇ ରଖିଥିଲେ *Die Knechtung des Arbeits. Einleitung (The Enslavement of the Worker, Introduction, ଶ୍ରମିକର ଦାସତ୍ୱ, ମୁଖବନ୍ଧ)*। ହେଲେ, ଅନ୍ୟାନ୍ୟ କାମରେ ବ୍ୟସ୍ତ ରହିବା ଯୋଗୁଁ କାମଟିକୁ ସେ ସାରି ପାରିଲେନି। ଶେଷରେ ସେ କେବଳ ଏହି ଭୂମିକା ଭାଗଟିର ନାମକରଣ କରିଥିଲେ: *The Part Played by Labour in the Transition from Ape to Man (ବାନରରୁ ମଣିଷକୁ ବିବର୍ତ୍ତନ ଧାରାରେ ଶ୍ରମର ଭୂମିକା)*। ଏହି ପ୍ରବନ୍ଧଟି ପାଣ୍ଡୁଲିପି ଆକାରରେ ଦୀର୍ଘ କାଳ ଧରି ପଡ଼ି ରହିବା ପରେ ପ୍ରଥମେ ୧୮୯୬ ମସିହାରେ *Die Neue Zeit* (Jahrgang XIV, Bd. 2, 1895-96, Nr. 44, pp. 545-54) ମାଗାଜିନ୍‌ରେ ପ୍ରକାଶିତ ହୋଇଥିଲା। ଏଙ୍ଗେଲ୍‌ସ୍‌ଙ୍କର ଅନ୍ୟ ଏକ ବହି *Dialectics of Nature* ର ଅଂଶ ହିସାବରେ ଏହା ୧୯୨୫ ରେ ପ୍ରକାଶିତ ହୋଇଥିଲା।

ଏଙ୍ଗେଲ୍‌ସ୍ ଜଣେ ବସ୍ତୁବାଦୀ ଥିଲେ। ତେଣୁ ସେ ସୃଷ୍ଟିତତ୍ତ୍ୱ ବା ମଣିଷ ଈଶ୍ୱର ସୃଷ୍ଟ ଭଳି କଥାକୁ ବିଚାରକୁ ନେଇ ନାହାଁନ୍ତି। ସେ ବିଜ୍ଞାନସମ୍ମତ ବିବର୍ତ୍ତନବାଦକୁ ତୋଳି ଧରିଛନ୍ତି। ବିବର୍ତ୍ତନବାଦ ଅନୁସାରେ ଏକ ବିଶେଷ ଧରଣର ବାନର ବିବର୍ତ୍ତନର ଧାରାରେ ମଣିଷ ହୋଇଛି। କିନ୍ତୁ ସେହି ବିଶେଷ ଧରଣର ବାନର ବିବର୍ତ୍ତନର ଧାରାରେ ଆପେ ଆପେ ମଣିଷ ହୋଇନି। ବାନରରୁ ମଣିଷକୁ ପରିବର୍ତ୍ତନରେ ଶ୍ରମର ଭୂମିକା ରହିଛି। ଶ୍ରମ ହିଁ ବାନରକୁ ମଣିଷ କରିଛି। ଏହି କଥାକୁ

ଏଙ୍ଗେଲସ୍ ପ୍ରାଞ୍ଜଳ ଭାବେ ବୁଝାଇ ମଣିଷର ଉତ୍ପତ୍ତିର ବସ୍ତୁବାଦୀ ବ୍ୟାଖ୍ୟା କରିଛନ୍ତି। ଏହା ସାଙ୍ଗକୁ ପ୍ରବନ୍ଧଟିରେ ସେ ପରିଶ୍ରମୀ ଜନଗଣ କିପରି ଦାସତ୍ୱ ବନ୍ଧନରେ ବାନ୍ଧି ହୋଇ ରହିଛନ୍ତି ଓ ସେମାନଙ୍କର ମୁକ୍ତିର ବାଟ କଅଣ ତାର ମଧ୍ୟ ଆଲୋଚନା କରିଛନ୍ତି।

ଆଜିକାଲି ଭାରତରେ ବିକାଶକୁ ନେଇ ଯେଉଁ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଛି ତଦ୍ୱାରା ବାୟୁମଣ୍ଡଳ ସରଗରମ ରହୁଛି। ପୁଞ୍ଜି ଦ୍ୱାରା ସମର୍ଥିତ ଓ ପୁଞ୍ଜିବାଦର ସମର୍ଥକ ସରକାର ଓ ସ୍ତାବକମାନେ ଯାହାକୁ ''ବିକାଶ'' ବୋଲି କହୁଛନ୍ତି, ଅନ୍ୟମାନେ ତାକୁ ବିକାଶ ନୁହେଁ ବିନାଶ ବୋଲି କହୁଛନ୍ତି। ଏମାନଙ୍କୁ ପୁଞ୍ଜିବାଦର ସମର୍ଥକମାନେ ବିକାଶ ବିରୋଧୀ ଲୋକ ବୋଲି କହୁଛନ୍ତି। ଦେଶରେ ଯଦି ହଜାରେ ଦିନରେ ହଜାର କାରଖାନା ବସିଗଲା, ତେବେ ତାକୁ ବିକାଶ କୁହାଯିବ କି? ଏହି ପ୍ରଶ୍ନର ଉତ୍ତର ''ହଁ'' ଓ ''ନାହିଁ'' ଉଭୟରେ ଦିଆ ଯାଇପାରେ। କେବଳ କେତେକ ଆଶୁ ପରିଣତିକୁ ବିଚାରକୁ ନେଇ ଯେପରି କାରଖାନା ବସିବା, କିଛି ଲୋକ ଚାକିରୀ ପାଇବା, କିଛିଟା ବର୍ଦ୍ଧିତ ଅର୍ଥନୈତିକ କାର୍ଯ୍ୟକଳାପ, ଇତ୍ୟାଦିକୁ ହିଁ ବିଚାରକୁ ନେଇ ଯଦି ଉତ୍ତର ଦିଆଯାଏ, ତେବେ ହଁ ଏହା ବିକାଶ। କିନ୍ତୁ କଳକାରଖାନାଗୁଡ଼ିକ ପାଇଁ ଜମି ଦେବା ବେଳେ ଲକ୍ଷ ସଂଖ୍ୟାରେ କେତେ ଲକ୍ଷ ଲୋକଙ୍କୁ ସେମାନଙ୍କର ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ଉଦ୍ୟାନରୁ ଓପାଡ଼ି ଦିଆଯାଇ ଚେରହୀନ, ରୋଜଗାରହୀନ, ଦୁଃଖପୂର୍ଣ୍ଣ ଜୀବନଯାପନ ପାଇଁ ମରୁଭୂମିକୁ ଫୋପାଡ଼ି ଦିଆଗଲା ଏବଂ ସେମାନଙ୍କ ସ୍ଥାନରେ ଶହ ସଂଖ୍ୟାରେ ମାତ୍ର କେତେ ଶହ ଲୋକଙ୍କୁ ସୁଖର ଜୀବନ ବିତେଇବା ପାଇଁ ଚାକିରୀ ମିଳିଲା? ଆପଣଙ୍କ ହୃଦୟ ଯଦି ସେହି ଚେରହୀନ, ଦୁଃଖୀ ମଣିଷମାନଙ୍କ ସାଥିରେ ରହିଲା, ତେବେ କହିବେ ଏହା ବିକାଶ ନୁହେଁ ବିନାଶ। ଉଦାହରଣ ସ୍ୱରୂପ, ସୁନ୍ଦରଗଡ଼ ଜିଲ୍ଲାରେ କେତେକ କାରଖାନା ଦ୍ୱାରା ପରିବେଶ ପ୍ରଦୂଷଣ ଯୋଗୁଁ କାରଖାନା ଚତୁର୍ଦ୍ଦିଗରେ ଥିବା ମଣିଷ,

ପଶୁପକ୍ଷୀ, ଗଛବୃକ୍ଷ ଓ ଚାଷ ଉପରେ ଯେଉଁ କୁପ୍ରଭାବ ପଡୁଛି, ତାସହ ଯଦି ଆପଣଙ୍କର ହୃଦୟ ରହିଗଲା, ତେବେ କହିବେ ଏହା ବିକାଶ ନୁହେଁ ବିନାଶ। ଏମିତି କହିଲେ ତ ବହୁତ କଥା କୁହାଯାଇ ପାରିବ। କିନ୍ତୁ ତାହା ପାଇଁ ଏହା ସ୍ଥାନ ନୁହେଁ। କିନ୍ତୁ ଯାହା କହିଲି ତାହା କହିବାର ଉଦ୍ଦେଶ୍ୟ ହେଲା: ଏହି ସମସ୍ୟା ଉପରେ ଏହି ପ୍ରବନ୍ଧରେ ଏଙ୍ଗେଲ୍‌ସ୍ ଯାହା କହୁଛନ୍ତି ତାହା ପାଠକମାନଙ୍କର, ତଥାକଥିତ ବିକାଶର ସପକ୍ଷବାଦୀ ଓ ବିରୋଧୀ ସମସ୍ତଙ୍କର, ଦୃଷ୍ଟିକୁ ଆଣିବା। ହାଡ଼, ରକ୍ତ, ମାଂସର ଶରୀର ବହି ନିଜକୁ ପ୍ରକୃତିର ଅଂଶ ଭାବି ଭବିଷ୍ୟତ ପିଢ଼ି ପାଇଁ ଏହି ପ୍ରକୃତିକୁ ଗଛବୃକ୍ଷ, ଜୀବଜନ୍ତୁ ଓ ମଣିଷମାନଙ୍କ ପାଇଁ ଠିକଣା ଅବସ୍ଥାରେ ଛାଡ଼ିବେ ନା ଫ୍ରାନ୍ସର ସମ୍ରାଟ ଷଡ଼ୋଶ ଲୁଇ କହିଲା ଭଳି ‘‘ମୋ ପରେ ପ୍ରଳୟ’’ କହି, ଆମ ପରେ ଏ ଦୁନିଆଁ ରହୁ ବା ବୁଡ଼ିଯାଉ କହି ଏହି ପ୍ରକୃତିକୁ ପୁଞ୍ଜିପତିଙ୍କ ଶୋଷଣ ପାଇଁ ଛାଡ଼ି ଦେଇ ଧ୍ୱଂସର ଉଦ୍ଦଣ୍ଡ ଲୀଳାର ମୂକ ସାକ୍ଷୀ ହେବେ? ଆଶା କରେ ଏଙ୍ଗେଲ୍‌ସ୍‌ଙ୍କ ପ୍ରବନ୍ଧଟି ଏହି ପ୍ରଶ୍ନର ଉତ୍ତର ଦେବାରେ ଆପଣଙ୍କୁ ସାହାଯ୍ୟ କରିବ।)

ଶ୍ରମ ହିଁ ସକଳ ସମ୍ପଦର ଉତ୍ସ — ଏହି କଥାଟିକୁ ରାଜନୈତିକ ଅର୍ଥନୀତିଜ୍ଞମାନେ ଜୋର ଦେଇ କହିଥାନ୍ତି। ପ୍ରକୃତି ଦତ୍ତ ବସ୍ତୁସମୂହକୁ ଶ୍ରମ ସମ୍ପଦରେ ପରିଣତ କରିଥାଏ। ଅତଏବ ସେହି ପ୍ରକୃତି ବାହାରେ ଶ୍ରମ ହିଁ ବାସ୍ତବରେ ସକଳ ସମ୍ପଦର ଉତ୍ସ। ଏମିତି ଏତିକି କହି ଦେଲେ ତ ଏହାର ଗୁରୁତ୍ୱ ସରିଲାନି, ଯେହେତୁ ଏହାର ଗୁରୁତ୍ୱ ତାଠାରୁ ସୀମାହୀନ ଭାବେ ବେଶି। ସମସ୍ତ ଧରଣର ମାନବିକ ସ୍ଥିତି ପାଇଁ ଏହା ହିଁ ହେଉଛି ଏକ ପ୍ରଥମ ଶ୍ରେଣୀର ମୌଳିକ ସର୍ତ୍ତ, ଏବଂ ଏହି ସର୍ତ୍ତର ପୁଣି ଗୁରୁତ୍ୱ ଏତେ ଯେ,

ଗୋଟିଏ ଅର୍ଥରେ, ଆମମାନଙ୍କୁ କହିବାକୁ ହେବ — ଖୋଦ୍ ମଣିଷକୁ ଶ୍ରମ ହିଁ ସୃଷ୍ଟି କରିଛି।

ଲକ୍ଷ ଲକ୍ଷ ଏପରି କି ବହୁ ଲକ୍ଷ ବର୍ଷ ପୂର୍ବର ଏକ ଯୁଗର କଥା। ଏପରି ଏକ ଯୁଗ ଯାହାର ସଠିକ୍ ନିର୍ଦ୍ଧାରଣ ଏବେ ବି ସମ୍ଭବ ହୋଇନି। ଅଥଚ୍ ବସୁଧାର ଇତିହାସରେ ଏହି ଯୁଗଟିକୁ ତୃତୀୟ ସ୍ତରୀୟ ଯୁଗ (Tertiary period) ଭାବେ ଭୂତତ୍ତ୍ୱବିତ୍‌ମାନେ ଜାଣନ୍ତି। ଖୁବ୍ ସମ୍ଭବତଃ ସେଇ ଯୁଗର ଶେଷ ଆଡ଼କୁ, ଗ୍ରୀଷ୍ମ ମଣ୍ଡଳର କୌଣସି ଏକ ଅଞ୍ଚଳରେ ମାନବ ସଦୃଶ ଲାଙ୍ଗୁଳବିହୀନ ବାନର ଜାତୀୟ ପ୍ରାଗ୍‌ମାନବମାନଙ୍କର ଏକ ବିଶେଷ ରୂପରେ ଅତି ଉନ୍ନତ ଜାତି (anthropoid apes) ବାସ କରୁଥିଲେ। ସମ୍ଭବତଃ ସେମାନେ ବର୍ତ୍ତମାନ ଭାରତ ମହାସାଗରଂ ମଧ୍ୟରେ ଲୀନ ହୋଇ ସାରିଥିବା ଏକ ବିଶାଳ ମହାଦେଶରେ ବାସ କରୁଥିଲେ। ଆମର ଏହି ପୂର୍ବଜମାନଙ୍କର ଏକ ପାଖାପାଖି ସଠିକ୍ ବର୍ଣ୍ଣନା ଡାରୱିନ୍ ଦେଇଛନ୍ତି। ସେମାନଙ୍କର ସାରା ଦେହ ଲୋମ ଦ୍ୱାରା ଆଚ୍ଛାଦିତ ଥିଲା, ସେମାନଙ୍କର ଦାଢ଼ି ଓ ଗୋଜିଆ କାନ ଥିଲା ଓ ସେମାନେ ଦଳ ଦଳ ହୋଇ ଗଛ ଉପରେ ବାସ କରୁଥିଲେ।[୨]

ଗଛ ଚଢ଼ିବାରେ ହାତ ଓ ଗୋଡ଼ର କାମ ଭିନ୍ନ ଭିନ୍ନ ହୋଇଥାଏ, କିନ୍ତୁ ସେମାନଙ୍କର ପରିବର୍ତ୍ତିତ ଜୀବନପ୍ରଣାଳୀ ଯୋଗୁଁ ଯେତେବେଳେ ସମତଳ ଭୂଇଁରେ ଯାଆସ କରିବା ଆବଶ୍ୟକ ହେଲା, ଏହି ପ୍ରାଗ୍‌ମାନବ ବା ବାନରମାନେ ଯାଆସ କଲା ବେଳେ ସେମାନଙ୍କ ହାତକୁ ବ୍ୟବହାର କରିବା ଅଭ୍ୟାସ ଆସ୍ତେ ଆସ୍ତେ ଛାଡ଼ି ଦେଲେ ଓ କ୍ରମଶଃ ଅଧିକରୁ ଅଧିକ ସିଧା

ସଳଖ ଠିଆ ଭଙ୍ଗୀରେ ଯାଆସ କରିବାରେ ଲାଗିଲେ। *ବାନରରୁ ମଣିଷକୁ ବିବର୍ତ୍ତନ ପ୍ରକ୍ରିୟାରେ ଏହା ହିଁ ଥିଲା ନିର୍ଣ୍ଣାୟକ ପଦକ୍ଷେପ।*

ବର୍ତ୍ତମାନ ଯାଏଁ ରହିଥିବା ବାନରମାନେ[୩] ମଣିଷ ସଦୃଶ ସିଧା ସଳଖ ଠିଆ ଭଙ୍ଗୀରେ କେବଳ ସେମାନଙ୍କର ପାଦ ସାହାଯ୍ୟରେ ଯାଆସ କରି ପାରନ୍ତି, କିନ୍ତୁ ସେମାନେ ତାହା କରନ୍ତି କେବଳ ଅତି ଆବଶ୍ୟକ ବେଳେ, ତାହା ପୁଣି ଅତି ବେଢଙ୍ଗରେ। ସେମାନଙ୍କର ସ୍ୱାଭାବିକ ଭଙ୍ଗୀ ହେଲା ଲଇଁ ଲଇଁ ଚାଲିବା ଓ ଚାଲିଲା ବେଳେ ହାତକୁ ବି ବ୍ୟବହାର କରିବା। ସେମାନଙ୍କ ମଧ୍ୟରୁ ଅଧିକାଂଶ ସେମାନଙ୍କର ମୁଠା ହାତର ହାଡୁଆ ପଟକୁ ତଳେ ରଖନ୍ତି ଓ ଗୋଡ଼ ଦୁଇଟିକୁ ଟେକି ଦେଇ ଦୁଇ ଲମ୍ବା ବାହୁର ମଝିରେ ଦେହଟିକୁ ଦୋହଲେଇ ଆଗକୁ ନିଅନ୍ତି — ଆଶାବାଡ଼ି ସାହାଯ୍ୟରେ ପଙ୍ଗୁମାନେ ଯେପରି ଯାଆସ କରନ୍ତି ପ୍ରାୟ ସେପରି। ଚାରି ପାଦରେ ଚାଲିବା ଠୁଁ ଦୁଇ ପାଦରେ ଚାଲିବା ପର୍ଯ୍ୟନ୍ତ ବିବର୍ତ୍ତନର ସମସ୍ତ ସ୍ତର ସାଧାରଣ ଭାବେ ଆଜି ମଧ୍ୟ ଆମେ ବାନରମାନଙ୍କ ମଧ୍ୟରେ ଲକ୍ଷ୍ୟ କରି ପାରିବା। ହେଲେ, ଦୁଇ ଗୋଡ଼ରେ ଚାଲିବାଟା ସେମାନଙ୍କ ମଧ୍ୟରୁ କାହା ପାଇଁ ବି, କେବେ ବି, ଏକ ଅସ୍ଥାୟୀ ବ୍ୟବସ୍ଥାରୁ ବଳି ଆଉ କିଛି ହୋଇନି।

ଆମର ଲୋମଶ ପୂର୍ବଜମାନଙ୍କ ପାଇଁ ସିଧା ସଳଖ ଠିଆ ଭଙ୍ଗୀରେ ଚାଲିବାଟା ଯଦି ପ୍ରଥମେ ସ୍ୱାଭାବିକ ହୋଇ, ସମୟ କ୍ରମେ, ଏକ ଆବଶ୍ୟକତା ହୋଇଗଲା, ତେବେ, ଏହା ସ୍ପଷ୍ଟ ଯେ, ଇତି ମଧ୍ୟରେ, ହାତ ସାହାଯ୍ୟରେ ଅନ୍ୟ ବିଭିନ୍ନ କାର୍ଯ୍ୟ କରିବା କ୍ଷମତା ବିକାଶ ଲାଭ କରିଥିଲା। ଏଥି ପୂର୍ବରୁ ବାନରମାନଙ୍କ ମଧ୍ୟରେ ହାତ ଓ ଗୋଡ଼ଗୁଡ଼ିକର ବ୍ୟବହାରରେ

ତଫାତ୍ ରହି ଆସିଛି। ଚଢ଼ିଲା ବେଳେ, ପୂର୍ବରୁ ସୂଚୀତ ହୋଇଥିବା ପ୍ରକାରେ, ହାତ ଓ ଗୋଡ଼ ଭିନ୍ନ ଭିନ୍ନ ଭାବରେ ବ୍ୟବହୃତ ହୋଇଥାନ୍ତି। ହାତଗୁଡ଼ିକ ମୁଖ୍ୟତଃ ଖାଦ୍ୟ ସଂଗ୍ରହ କରିବାରେ ଓ ତାକୁ ଧରିବାରେ ବ୍ୟବହୃତ ହୋଇଥାଏ ଠିକ୍ ସେପରି ଯେପରି ସ୍ୱଳ୍ପ ବିକଶିତ ସ୍ତନ୍ୟପାୟୀ ପ୍ରାଣୀମାନେ ସେମାନଙ୍କର ଆଗ ପଞ୍ଝାଗୁଡ଼ିକୁ ବ୍ୟବହାର କରିଥାନ୍ତି। ଅନେକ ବାନର ସେମାନଙ୍କର ହାତକୁ ବ୍ୟବହାର କରି ଗଛ ଉପରେ ବସା ତିଆରି କରନ୍ତି ଅବା ଝଡ଼ ତୋଫାନରୁ ନିଜକୁ ରକ୍ଷା କରିବା ପାଇଁ, ଉଦାହରଣ ସ୍ୱରୂପ — ସିମ୍ପାଞ୍ଜିମାନେ କଲା ଭଳି, ଡାଳ ଡାଳ ମଧ୍ୟରେ ଛପର ତିଆରି କରନ୍ତି। ଶତ୍ରୁଙ୍କ ଆକ୍ରମଣରୁ ନିଜନିଜକୁ ରକ୍ଷା କରିବା ପାଇଁ ହାତରେ ବାଡ଼ି ଧରନ୍ତି ଅବା ହାତ ସାହାଯ୍ୟରେ ସେମାନେ ଶତ୍ରୁ ଉପରେ ଟେକା, ପଥର, ଫଳ ବର୍ଷଣ କରନ୍ତି। ଆବଦ୍ଧ ଅବସ୍ଥାରେ[୪] ରହିଥିଲା ବେଳେ ସେମାନେ ମଣିଷମାନଙ୍କୁ ଅନୁକରଣ କରି ହାତ ସାହାଯ୍ୟରେ କେତେକ ସରଳ କାର୍ଯ୍ୟ କରିଥାନ୍ତି। ଠିକ୍ ଏଇଠି ହିଁ ଜଣେ ଦେଖି ପାରେ ନିହାତି ମଣିଷ ଭଳି ଦିଶୁଥିବା ବାନରର ଅନୁନ୍ନତ ହାତ ଓ ଲକ୍ଷ ଲକ୍ଷ ବର୍ଷର ଶ୍ରମ ଦ୍ୱାରା ନିଖୁଣ ହୋଇଥିବା ମଣିଷର ହାତ ମଧ୍ୟରେ ତଫାତ୍‌ଟା କେତେ। ଦୁହିଁଙ୍କ ହାତରେ ଥିବା ହାଡ଼ର ସଂଖ୍ୟା ଓ ମାଂସପେଶୀର ଗଢ଼ଣ ସମାନ, ତଥାପି ନିହାତି ଆଦିମ ମଣିଷଟି ଏପରି ଶହ ଶହ ପ୍ରକାରର କାର୍ଯ୍ୟ କରିପାରେ ଯାହା ବାନର ଜାତିର କୌଣସି ବି ପ୍ରାଣୀ ତାର ନକଲ କରି ପାରିବନି — ଏପରିକି ବାନର ଜାତିର କୌଣସି ବି ପ୍ରାଣୀ ପଥରର ଅଧାଗୁଆ, ଅଚିକ୍କଣ ଛୁରିଟିଏ ବି କରିପାରି ନଥିଲା।

ବାନରରୁ ମଣିଷକୁ ବିବର୍ତ୍ତନର ହଜାର ହଜାର, ଏପରି ବହୁ ହଜାର ବର୍ଷ ମଧ୍ୟରେ ଆମର ପୂର୍ବଜମାନେ ସେମାନଙ୍କର ହାତଗୁଡ଼ିକୁ ଯେଉଁ ପ୍ରଥମ କାର୍ଯ୍ୟଗୁଡ଼ିକ କରିବାରେ ଲଗେଇବା ଶିଖିଲେ, ହୁଏତ ସେଗୁଡ଼ିକ ଅତି ସରଳ ଥିଲା। ତଥାପି ନିହାତି ନିମ୍ନ ସ୍ତରର ଆଦିମ ମଣିଷମାନେ, ଏପରିକି ସେମାନେ — ଯେଉଁମାନଙ୍କୁ ଆହୁରି ପଛକୁ ନେଇଯାଇ ଅଧିକ ପଶୁ–ତୁଲ୍ୟ ଅବସ୍ଥାରେ ରହିଥିବା ସଙ୍ଗେ ସଙ୍ଗେ ସେମାନଙ୍କର ଶାରିରୀକ ଉନ୍ନତି ସେତେଟା ହୋଇ ନଥିଲା ବୋଲି ମନେ କରାଯାଇ ପାରେ — ଏହି ଅବସ୍ଥାନ୍ତର କାଳର ପ୍ରାଣିମାନଙ୍କ ଅପେକ୍ଷା ଯଥେଷ୍ଟ ଉନ୍ନତ ଥିଲେ। ମାନବୀୟ ହାତ ସାହାଯ୍ୟରେ ପଥର ଖଣ୍ଡିଏକୁ ବାଗେଇ ପ୍ରଥମ ଛୁରିଟିଏ ପାଇବା ପୂର୍ବରୁ ସମୟର ସମ୍ଭବତଃ ଏପରି ଏକ ଯୁଗ ବିତି ଯାଇଥିଲା, ଯାହାର ତୁଳନାରେ ଆମ୍ଭମାନଙ୍କର ବିଦିତ ଐତିହାସିକ ଯୁଗଟି ନିହାତି ନଗଣ୍ୟ ଜଣା ପଡ଼େ। କିନ୍ତୁ ନିର୍ଣ୍ଣାୟକ ପଦକ୍ଷେପ ନିଆ ସରିଥିଲା, *ହାତ ସ୍ୱାଧୀନ ହୋଇ ସାରିଥିଲା* ଏବଂ ଏଣିକି ଅଧିକ ନିପୁଣତା ହାସଲ କରିବାର ସମ୍ଭାବନା ରହିଥିଲା। ଏହି ଭାବେ ଅର୍ଜିତ ନମନୀୟତା ପୁରୁଷାନୁକ୍ରମେ ଗଡ଼ି ଚାଲିଲା ଓ କାଳକ୍ରମେ ବୃଦ୍ଧି ପାଇବାରେ ଲାଗିଲା।

ଏହି ଭାବେ ହାତ ଶ୍ରମର କେବଳ ଏକ ଅଙ୍ଗ ନୁହେଁ, *ଏହା ଶ୍ରମର ଫଳ ମଧ୍ୟ*। ଶ୍ରମ, ନିତ୍ୟ ନୂତନ କାର୍ଯ୍ୟ କରିବା ପାଇଁ ଖାପ ଖୁଆଇବା ଗୁଣ, ଉତ୍ତରାଧିକାର ସୂତ୍ରରେ ପାଇଥିବା ମାଂସପେଶୀ, ଅସ୍ଥିବନ୍ଧ ଓ ଦୀର୍ଘ ମିଆଦି ପରିବର୍ତ୍ତନ ଫଳରେ ବିଶେଷ ଭାବେ ବିକାଶ ଲାଭ କରିଥିବା ଅସ୍ଥିକୁ ନୂତନ ତଥା ଜଟିଳରୁ ଜଟିଳତର କାର୍ଯ୍ୟରେ ସଦା ସତେଜ ରୂପରେ ଖଟେଇବା ଗୁଣ

— ଏହି ସବୁ ମଣିଷର ହାତ ପାଇଁ ଏପରି ଏକ ପରିପୂର୍ଣ୍ଣତା ଆଣି ଦେଇଥିଲା ଯାହାରି ବଳରେ ସୃଷ୍ଟି ହୋଇଥିବା ରାଫେଲ୍‌ଙ୍କ ଚିତ୍ରକଳା[୫], ଥର୍‌ଭାଲ୍‌ଡ୍‌ଜେନ୍‌ଙ୍କ ଭାସ୍କର୍ଯ୍ୟ[୬] ଓ ପାଗାନିନିଙ୍କ ସଙ୍ଗୀତ[୭] ମାୟାଜାଲ ଦ୍ୱାରା ସୃଷ୍ଟି ହୋଇଥିଲା ଭଳି ଲାଗେ।

କିନ୍ତୁ ହାତ ଏକୁଟିଆ, ଅଲଗା ନଥିଲା — ଏକ ସଂହତ, ଅତୀବ ଜଟିଳ ଜୈବିକ-ଦେହର ଏକ ଅଙ୍ଗ ମାତ୍ର ଥିଲା। ଯାହା ହାତର ସେବାରେ ଲାଗିଛି, ତାହା ହାତ ସେବା କରୁଥିବା ସମଗ୍ର ଦେହର ସେବାରେ ମଧ୍ୟ ଲାଗିଛି ଓ ତାହା ଦୁଇ ପ୍ରକାରରେ ଘଟିଛି।

ପ୍ରଥମେ, ଡାରଓ୍ୱିନ୍‌ଙ୍କ ଦ୍ୱାରା ନାମିତ ହୋଇଥିବା ଅଭିବୃଦ୍ଧିର ସହସମ୍ପର୍କ ନିୟମ (the law of correlation of growth) ଦ୍ୱାରା ଦେହ ଉପକୃତ ହୋଇଥିଲା। ଏହି ନିୟମ କହେ ଯେ ଏକ ଜୈବିକ-ଦେହର ଭିନ୍ନ ଭିନ୍ନ ଅଙ୍ଗର ବିଶେଷ ଆକୃତିଗୁଡ଼ିକ ସର୍ବଦା ଅନ୍ୟାନ୍ୟ ଅଙ୍ଗର ଆକୃତିଗୁଡ଼ିକ ସହିତ ବାନ୍ଧି ହୋଇ ରହିଥାଏ, ଯଦିଚ୍ ଏମିତି ଦେଖିବା ପାଇଁ ସେଗୁଡ଼ିକ ମଧ୍ୟରେ କୌଣସି ପ୍ରକାର ସମ୍ବନ୍ଧ ଥିବା ଭଳି ଜଣା ପଡ଼େନା।[୮] ଏଣୁ ଯେଉଁ ପ୍ରାଣୀମାନଙ୍କର ଦେହରେ କୋଷକେନ୍ଦ୍ରହୀନ ଲୋହିତ ରକ୍ତ କୋଷମାନ ଥାଏ, ଏବଂ ଯେଉଁ ପ୍ରାଣୀମାନଙ୍କର ମୁଣ୍ଡଟି ମେରୁଦଣ୍ଡର ପ୍ରଥମ ହାଡ଼ ସହ ଦ୍ୱୈତ ଗ୍ରନ୍ଥି (double articulation (condyles)) ଦ୍ୱାରା ଯୋଡ଼ି ହୋଇଥାଏ, କୌଣସି ବ୍ୟତିକ୍ରମ ନଥାଇ ସେମାନଙ୍କର ସମସ୍ତଙ୍କର ଛୁଆଙ୍କୁ ସ୍ତନ ଖୁଆଇବା ପାଇଁ ସ୍ତନଗ୍ରନ୍ଥିମାନ ରହିଥାଏ। ସେହି ଭଳିଆ, ଯେଉଁ ସ୍ତନ୍ୟପାୟୀ ପ୍ରଣୀମାନଙ୍କର ଖୁରା ଦୁଇ ଫାଳିଆ, ରୋମନ୍ଥନ ପାଇଁ

ସଚ୍ରାଚ୍ର ସେହିମାନଙ୍କର ବହୁ ପାକସ୍ଥଳୀ ଥାଏ। ଶରୀରର କେତେକ ଅଙ୍ଗର ଆକୃତିରେ ପରିବର୍ତ୍ତନ ହେଲେ ଅନ୍ୟାନ୍ୟ କେତେକ ଅଙ୍ଗର ଆକୃତିରେ ପରିବର୍ତ୍ତନ ଘଟି ଥାଏ, ଯଦିଚ୍ ଏହି ସମ୍ପର୍କର ବ୍ୟାଖ୍ୟା ଆମେ କରି ପାରିବାନି। ନୀଳ ଆଖିଆ ସଫା ଧଳା ବିରାଡ଼ି ସର୍ବଦା, ଅବା ପ୍ରାୟ ସର୍ବଦା, କାଲ ହୋଇଥାଏ। ମଣିଷର ହାତର ନିପୁଣତାର କ୍ରମ ବିକାଶ, ସିଧା ସଳଖ ଠିଆ ହେବା, ଓ ଚାଲିବା ପାଦ ଦୁଇଟି ସମାନୁପାତିକ ଭାବେ ଖାପ ଖାଇବା, ନିଃସନ୍ଦେହରେ, ଏପରି ସହସମ୍ପର୍କ କାରଣ ଯୋଗୁଁ, ଜୈବିକ-ଦେହର ଅନ୍ୟାନ୍ୟ ଅଂଶ ଉପରେ ପ୍ରତିକ୍ରିୟା ସୃଷ୍ଟି କଲା। ତଥାପି ଏହି ବିଷୟଟି ଉପରେ ଆହୁରି ଯଥେଷ୍ଟ ଗବେଷଣା ହୋଇନି, ଯାହାରି ଫଳରେ ଏମିତି ସାଧାରଣ ଭାବେ କହିବା ଛଡ଼ା ବେଶି କିଛି କହି ପାରୁନୁ।

ଦେହର ଅନ୍ୟାନ୍ୟ ଅଂଶ ଉପରେ ହାତର ବିକାଶର ସିଧା ସଳଖ, ପ୍ରମାଣିତ କରି ପାରିବା ଭଳି ପ୍ରଭାବ ହେଉଛି ଆହୁରି ବେଶି ଗୁରୁତ୍ୱପୂର୍ଣ୍ଣ। ପୂର୍ବରୁ କୁହାଯାଇଛି ଯେ ଆମର ବାନର ପୂର୍ବଜମାନେ ଦଳବଦ୍ଧ ହୋଇ ରହୁଥିଲେ; ତେଣୁ ଅନ୍ୟାନ୍ୟ ପ୍ରାଣୀମାନଙ୍କ ଠାରୁ ବଳି ସାମାଜିକ ଚରିତ୍ର ଥିବା ମଣିଷର ବ୍ୟୁତ୍ପତ୍ତିର ସୂତ୍ର ଦଳବଦ୍ଧ ହୋଇ ରହୁ ନଥିବା ପ୍ରାଣୀମାନଙ୍କୁ ମଣିଷର ନିକଟସ୍ଥ ପୂର୍ବଜ ଭାବି ସେମାନଙ୍କ ମଧ୍ୟରେ ଖୋଜିଲେ ମିଳିବାଟା ସ୍ପଷ୍ଟତଃ ଅସମ୍ଭବ। ହାତର ବିକାଶ ସଙ୍ଗେ ସଙ୍ଗେ, ଶ୍ରମର ବିକାଶ ସଙ୍ଗେ ସଙ୍ଗେ, ପ୍ରକୃତି ଉପରେ ମଣିଷର ପ୍ରଭୁତ୍ୱ ଜାରି ଆରମ୍ଭ ହୋଇଗଲା ଏବଂ ପ୍ରତ୍ୟେକଟା ନୂଆ ଅଗ୍ରଗତି ମଣିଷର ଦିଗନ୍ତକୁ ବିସ୍ତାରୀତ, ଅଧିକରୁ ଅଧିକ ବିସ୍ତାରୀତ କରିବାରେ ଲାଗିଲା। ପ୍ରାକୃତିକ ବସ୍ତୁଗୁଡ଼ିକର, ସେଇ ପର୍ଯ୍ୟନ୍ତ ଅଜଣା ଥିବା,

ନୂଆ ନୂଆ ଗୁଣକୁ ସେ ନିରବଛିନ୍ନ ଭାବରେ ଆବିଷ୍କାର କରିବାରେ ଲାଗିଲା। ଅନ୍ୟ ପକ୍ଷରେ, ଶ୍ରମର ବିକାଶ ଯୋଗୁଁ ପରସ୍ପର ମଧ୍ୟରେ ସହଯୋଗ ଓ ଯୌଥ କାର୍ଯ୍ୟକଳାପ ଆବଶ୍ୟକ କରୁଥିବା ଘଟଣାଗୁଡ଼ିକ ବୃଦ୍ଧି ପାଇବା ଦ୍ୱାରା ଓ ପ୍ରତ୍ୟେକ ବ୍ୟକ୍ତି ଏହି ଯୌଥ କାର୍ଯ୍ୟକଳାପରୁ କି କି ଫାଇଦା ପାଇଥାଏ ତାହା ସ୍ପଷ୍ଟ ହୋଇଯିବା ଦ୍ୱାରା ସମାଜର ସଭ୍ୟମାନଙ୍କୁ ଆହୁରି ନିକଟତର, ଅଧିକ ଘନିଷ୍ଠ ହେବାରେ ତାହା ଅନିବାର୍ଯ୍ୟ ଭାବେ ସାହାଯ୍ୟ କଲା। ସଂକ୍ଷେପରେ କହିଲେ, ବିକଶୁ ଥିବା ମଣିଷମାନେ ଏପରି ଏକ ସ୍ଥିତିରେ ପହଞ୍ଚି ଥିଲେ, ଯେଉଁଠି ପରସ୍ପରକୁ *ସେମାନଙ୍କର କିଛି କହିବାର ଥିଲା* । ଆବଶ୍ୟକତା ସୃଷ୍ଟି କଲା ଅଙ୍ଗ; ବାନରର ଅବିକଶିତ ବାଗ୍‌ଯନ୍ତ୍ରଟି ସ୍ୱର ନିୟନ୍ତ୍ରଣ ଜନିତ ପରିବର୍ତ୍ତନ ଦ୍ୱାରା ଧୀରେ ଧୀରେ ଅଥଚ୍ ନିଶ୍ଚିତ ରୂପରେ ନିରବଛିନ୍ନ ଭାବେ ଅଧିକରୁ ଅଧିକ ବିକଶିତ ସ୍ୱର ଉତ୍ପାଦନ କରିବାରେ ଲାଗିଲା, ପାଟିର ଅଙ୍ଗଗୁଡ଼ିକ ଗୋଟିକ ପରେ ଆଉ ଗୋଟିଏ ସ୍ପଷ୍ଟ ଶବ୍ଦ ଉଚ୍ଚାରଣ କରିବା ଶିଖିଲେ।

ଶ୍ରମ ଯୋଗୁଁ ଓ ଶ୍ରମ ପ୍ରକ୍ରିୟାରେ ହିଁ ଭାଷାର ସୃଷ୍ଟି ବୋଲି ଏଇ ଯେଉଁ ବ୍ୟାଖ୍ୟା ଦିଆଗଲା, କେବଳ ତାହା ହିଁ ଠିକ୍ ବୋଲି ଅନ୍ୟାନ୍ୟ ପ୍ରାଣୀମାନଙ୍କ ସହ ତାର ତୁଳନା ପ୍ରମାଣିତ କରିଦିଏ। ଏପରିକି ନିହାତି ବିକଶିତ ପ୍ରାଣୀମାନଙ୍କ ମଧ୍ୟରେ ଯେଉଁ ଟିକକ ବିଷୟ ପରସ୍ପରକୁ ଜଣେଇବା ଆବଶ୍ୟକ ହୋଇଥାଏ, ତାହା କୌଣସି ଉଚ୍ଚାରିତ ଭାଷା ଆବଶ୍ୟକ କରେନା। ତାର ସ୍ୱାଭାବିକ ଅବସ୍ଥାରେ, କୌଣସି ପ୍ରାଣୀ କଥା କହିପାରୁ ନଥିବା ଯୋଗୁଁ ଅବା ମଣିଷର ଭାଷା ବୁଝିପାରୁ ନଥିବା ହେତୁ ଅସମର୍ଥ

ଅନୁଭବ କରେନା। ଅବଶ୍ୟ, ମଣିଷ ଦ୍ୱାରା ପୋଷ ମନାଯାଇ ଥିଲେ, ତାହା ସମ୍ପୂର୍ଣ୍ଣ ଭିନ୍ନ କଥା। କୁକୁର ଓ ଘୋଡ଼ା, ମଣିଷର ଶଂସ୍ପର୍ଷରେ ଆସି, ଉଚ୍ଚାରିତ ଭାଷା ପାଇଁ ସେମାନଙ୍କର କାନକୁ ଏତେ ସୁନ୍ଦର ବିକଶିତ କରିଛନ୍ତି ଯେ ସେମାନଙ୍କର ଧାରଣା-ପରିସର (range of concepts) ମଧ୍ୟରେ ଯେକୌଣସି ଭାଷା ସେମାନେ ସହଜରେ ବୁଝି ପାରନ୍ତି। ପୁଣି ମଣିଷକୁ ଭଲ ପାଇବା, ତା ପ୍ରତି କୃତଜ୍ଞ ରହିବା ଭଳି ଅନୁଭବ କ୍ଷମତା ସେମାନେ ହାସଲ କରିଛନ୍ତି, ଯାହା ସେମାନଙ୍କ ପାଇଁ ପୂର୍ବେ ଅପରିଚିତ ଥିଲା। ଯେଉଁମାନଙ୍କର ଏହି ଭଳିଆ ପ୍ରାଣୀମାନଙ୍କ ସହ ଘନିଷ୍ଠ କାରବାର ରହିଛି, ସେମାନେ ଏପରି ଏକ ବିଶ୍ୱାସରୁ କ୍ୱଚିତ୍ ରକ୍ଷା ପାଇ ପାରିବେ ଯେ, ଅଧିକାଂଶ କ୍ଷେତ୍ରରେ କଥା କହି ନପାରିବାଟା ଏକ ଖୁଣ ବୋଲି *ବର୍ତ୍ତମାନ* ଏହି ପ୍ରାଣୀମାନେ ଅନୁଭବ କରୁଛନ୍ତି, ଯଦିଚ୍, ଦୁର୍ଭାଗ୍ୟବଶତଃ, ଏହା ଏପରି ଏକ ବିଷୟ ଯାହାର ପ୍ରତିକାର କରି ହେବନି, କାରଣ ସେମାନଙ୍କର ବାଗ୍‌ଯନ୍ତ୍ରଗୁଡ଼ିକ ଏକ ନିର୍ଦ୍ଦିଷ୍ଟ ଦିଗରେ ବିଶେଷ କାମ ପାଇଁ ଉଦ୍ଦିଷ୍ଟ ହୋଇ ସାରିଛି। ତଥାପି ଯେଉଁମାନଙ୍କର ବାଗ୍‌ଯନ୍ତ୍ର ରହିଛି, କେତେକ ସୀମା ମଧ୍ୟରେ ଏହି ଅପାରଗତା ମଧ୍ୟ ଲୋପ ହେଇ ଯାଉଛି। ପକ୍ଷୀ ଓ ମଣିଷର ପାଟି ମଧ୍ୟରେ ଯେତେଟା ଭିନ୍ନତା ରହିପାରେ, ତାହା ରହିଛି। ତଥାପି ପକ୍ଷୀ ହେଉଛି ଏକ ମାତ୍ର ପ୍ରାଣୀ ଯିଏ କଥା କହିବା ଶିଖି ପାରେ। ଏବଂ ଶୁଆ, ଯାହାର ସ୍ୱର ଅତି ବୀଭତ୍ସ, ସଭିଙ୍କ ଠୁଁ ଭଲ କହିପାରେ। ଶୁଆ ଯାହା କହେ ତାହାର ଅର୍ଥ ଯେ ସେ ବୁଝେନା, ଏହାର ବିରୋଧ କେହି ନ କରନ୍ତୁ। ଏକଥା ସତ ଯେ, କହିବା ଓ ମଣିଷମାନଙ୍କ ସାନିଧ୍ୟରେ ରହିବାର ନିଛକ ଆନନ୍ଦ ପାଇଁ ଶୁଆଟିଏ ଘଣ୍ଟା ଘଣ୍ଟା ଧରି ସେ ଶିଖିଥିବା ସମସ୍ତ ଶବ୍ଦସମୁହର ପୁନରାବୃତି କରି ଲଗାତର

ଭାବେ ବକର ବକର ହେଇପାରେ। କିନ୍ତୁ ତାର ଧାରଣା–ପରିସର (range of concepts) ର ସୀମା ମଧ୍ୟରେ ସେ କଅଣ କହୁଛି ତାହା ବୁଝିବା ପାଇଁ ଶିଖି ପାରେ। ଗୋଟିଏ ଶୁଆକୁ ଗାଳିଗୁଲଜ ଶବ୍ଦଗୁଡ଼ିକ ଏପରି ଭାବରେ ଶିକ୍ଷା ଦିଆଯାଉ ଯେପରି ସେଗୁଡ଼ିକର ଅର୍ଥର ଧାରଣା ସେ ପାଇ ପାରିବ (ଗ୍ରୀଷ୍ମ ମଣ୍ଡଳରୁ ଫେରୁଥିବା ନାବିକମାନଙ୍କ ପାଇଁ ଏହା ତ ଗୋଟିଏ ଅତି ମଜାର କଥା) ; ଚିଡ଼ାନ୍ତୁ ତାକୁ, ଅବିଳମ୍ବେ ଦେଖିବେ ଯେ ବର୍ଲିନ୍‌ର ଫଳ ପନିପରିବା ବିକାଳି ଗାଳିଗୁଲଜ ଶବ୍ଦଗୁଡ଼ିକୁ ଯେତିକି ଠିକ୍ ଭାବେ ବ୍ୟବହାର କରିପାରେ ସେ ମଧ୍ୟ ସେତିକି ଠିକ୍ ଭାବେ ବ୍ୟବହାର କରିପାରେ। ରୁଚିକର ଖାଦ୍ୟ ଟୁକୁରା ପାଇଁ ଅନୁନୟ ହେବା ବେଳେ ମଧ୍ୟ ସେଇ କଥା।

ପ୍ରଥମେ ଶ୍ରମ, ତା ପରେ ଓ ତା ସହିତ କଥା — ଏହି ଦୁଇଟି ଥିଲା ନିହାତି ଆବଶ୍ୟକୀୟ ପ୍ରୋତ୍ସାହକ, ଯାହାରି ପ୍ରଭାବରେ ବାନରର ମସ୍ତିଷ୍କଟି ଧୀରେ ଧୀରେ ମଣିଷର ମସ୍ତିଷ୍କରେ ପରିବର୍ତ୍ତିତ ହେଲା, ଓ ଯାହା, ସମସ୍ତ ସାମଞ୍ଜସ୍ୟ ସତ୍ୱେ, ଥିଲା ତା ଠାରୁ ବଡ଼ ତଥା ଅଧିକ ନିଖୁଣ। ମସ୍ତିଷ୍କର ବିକାଶ ସାଥେ ସାଥେ ତାର ଅତି ଜରୁରି ସାଧନ — ଇନ୍ଦ୍ରିୟ — ଗୁଡ଼ିକ ମଧ୍ୟ ବିକଶିତ ହେଲା। ବାଗ୍‌ଶକ୍ତିର କ୍ରମଶଃ ବିକାଶ ଶ୍ରବଣ ଇନ୍ଦ୍ରିୟରେ ଯେପରି ଅନିବାର୍ଯ୍ୟ ଭାବେ ଅନୁରୂପ ସଂସ୍କାର ଆଣିଥାଏ, ଠିକ୍ ସେପରି ମସ୍ତିଷ୍କଟିର ସାମଗ୍ରୀକ ବିକାଶ ତାର ସହଚର ଭାବେ ଆଣି ଥାଏ ସମସ୍ତ ଇନ୍ଦ୍ରିୟଗୁଡ଼ିକରେ ଅନୁରୂପ ସଂସ୍କାର। ଈଗଲ ମଣିଷ ଠାରୁ ବଳି ବହୁ ଦୂରକୁ ଦେଖି ପାରେ, ହେଲେ ମଣିଷର ଆଖିଟି ସୂକ୍ଷ୍ମ ଦର୍ଶନ ଦ୍ୱାରା ଗୋଟିଏ ଜିନିଷରେ ବହୁ କଥା ଦେଖି ପାରେ, ଯାହା ଈଗଲର ଆଖି ଦେଖି ପାରେନା।

ମଣିଷ ଅପେକ୍ଷା କୁକୁରର ଆଘ୍ରାଣ ଶକ୍ତି ଅତି ତୀକ୍ଷ୍ଣ, ହେଲେ ମଣିଷ ପାଇଁ ବିଭିନ୍ନ ଗନ୍ଧ ହୋଇଥାଏ ବିଭିନ୍ନ ବସ୍ତୁର ସଙ୍କେତ ଏବଂ ଏହି ଭାବେ ମଣିଷ ଯେତେ ପ୍ରକାରର ଗନ୍ଧ ସହ ପରିଚିତ, ତାର ଶହେ ଭାଗରୁ ଏକ ଭାଗ ସହ ମଧ୍ୟ କୁକୁର ପରିଚିତ ନୁହେଁ। ପ୍ରାଥମିକ, ସ୍ଥୂଳତମ ଆକାରରେ ହେଲେ ହେଉ ପଛେ ସ୍ପର୍ଶେନ୍ଦ୍ରିୟ ବାନରମାନଙ୍କ ପାଖରେ କ୍ୱଚିତ୍ ଦେଖା ଯାଏ, ଅଥଚ ମଣିଷ ପାଖରେ ଖୋଦ୍ ହାତର ବିକାଶ ସହ ଯୋଡ଼ି ହୋଇ, ଶ୍ରମ କରିଆରେ, ତାହାର ବିକାଶ ଘଟିଛି।

ମସ୍ତିଷ୍କ ଓ ତାର ଆନୁଷଙ୍ଗିକ ଇନ୍ଦ୍ରିୟଗୁଡ଼ିକର ବିକାଶ, ଚେତନା କ୍ଷେତ୍ରରେ କ୍ରମବର୍ଦ୍ଧମାନ ସ୍ୱଷ୍ଟତା, ବିମୂର୍ତ୍ତୀକରଣ କ୍ଷମତା (power of abstraction) ଓ ବିଚାର କ୍ଷମତାର ଅଭିବୃଦ୍ଧି ଶ୍ରମ ଓ ବାଗ୍‌ଶକ୍ତି ଉପରେ ପ୍ରତିକ୍ରିୟା ସୃଷ୍ଟି କଲେ ତଥା ଶ୍ରମ ଓ ବାଗ୍‌ଶକ୍ତି ଉଭୟକୁ ଆହୁରି ବିକଶିତ ହେବା ପାଇଁ ସଦା ଜୀବିତ ଉଦ୍ଦୀପନା ଯୋଗେଇଲେ। ପରିଶେଷରେ ମଣିଷ ଯେତେବେଳେ ବାନର ଠୁଁ ପୃଥକ ହୋଇଗଲା, ସେତେବେଳେ ଏହି ବିକାଶର ଅନ୍ତ ହୋଇ ନଥିଲା, ବରଂ ବିଭିନ୍ନ ଜନଗୋଷ୍ଠୀ ମଧ୍ୟରେ ଓ ବିଭିନ୍ନ ସମୟରେ ବିକାଶର ମାତ୍ରା ଓ ଦିଗ କିଛିଟା ଏପଟ ସେପଟ ହୋଇଥିବା ସତ୍ତ୍ୱେ, ଏବଂ ଏପରିକି ସ୍ଥାନୀୟ ଭାବେ ହେଉ ଅବା ଅସ୍ଥାୟୀ ଭାବେ ହେଉ କିଛିଟା ବାଧା ପାଇଥିବା ସତ୍ତ୍ୱେ, ମୋଟା ମୋଟି ଭାବେ ଏହାର ଆହୁରି ଅଧିକ ଶକ୍ତିଶାଳୀ ବିକାଶ ହୋଇଥିଲା। ପରିପୂର୍ଣ୍ଣ, ଅଭିଜ୍ଞ ମଣିଷ ଦେଖା ଦେବା ସଙ୍ଗେ ସଙ୍ଗେ ଦେଖା ଦେଇଥିଲା ଆଉ ଏକ ନୂଆ ଉପାଦାନର ଭୂମିକା ଏବଂ ସେଇ ନୂଆ ଉପାଦାନଟି ଥିଲା ସମାଜ । ଶ୍ରମ ଓ ବାଗ୍‌ଶକ୍ତିର ଏହି ବିକାଶ ଧାରାକୁ

*ସମାଜ*, ଏକ ପକ୍ଷରେ, ତ୍ୱରାନ୍ୱିତ କଲା, ଅପର ପକ୍ଷରେ, ଅଧିକ ନିର୍ଦ୍ଦିଷ୍ଟ ଦିଗରେ ପରିଚାଳିତ କଲା।

ପଲେ ଗଛ–ଚଢ଼ା ମାଙ୍କଡ଼ରୁ ମଣିଷ ସମାଜ ଉଦ୍ଭବ ହେବାରେ ବସୁଧାର ଇତିହାସର ଲକ୍ଷ ଲକ୍ଷ ବର୍ଷ ନିଶ୍ଚିତ ରୂପେ ଅତିବାହିତ ହୋଇଥିଲା — ଯାହା ମଣିଷ ଜୀବନରଂ ଇତିହାସର ଏକ ମୁହୂର୍ତ୍ତର ତାତ୍ପର୍ଯ୍ୟ ଠୁଁ ବଳି ତାତ୍ପର୍ଯ୍ୟପୂର୍ଣ୍ଣ ନଥିଲା। ତଥାପି ପରିଶେଷରେ ଏହା ଉଦ୍ଭବ ହେଇଥିଲା। ପଲେ ମାଙ୍କଡ଼ ଓ ଏକ ମଣିଷ ସମାଜ ମଧ୍ୟରେ ଚରିତ୍ରଗତ ପ୍ରଭେଦ ହିସାବରେ ଆମେ ପୁଣି କଅଣ ପାଇଥାଉ? *ଶ୍ରମ*। ଭୌଗଳିକ ଅବସ୍ଥା ଦ୍ୱାରା ଅବା ପ୍ରତିବେଶୀ ଦଳଗୁଡ଼ିକର ପ୍ରତିରୋଧ ଦ୍ୱାରା ତା ପାଇଁ ନିର୍ଦ୍ଧାରୀତ ହୋଇଥିବା ଏକ ଅଞ୍ଚଳ ମଧ୍ୟରେ ଖାଇବା ବୁଲିବାରେ ମାଙ୍କଡ଼ ଦଳଟି ସନ୍ତୁଷ୍ଟ ହୋଇ ରହୁଥିଲା; ଅବଶ୍ୟ ଖାଦ୍ୟର ସନ୍ଧାନରେ ଏହା ନୂଆ ନୂଆ ଅଞ୍ଚଳକୁ ଯାଉଥଲା ଏବଂ ଏକ ନୂଆ ଖାଦ୍ୟାଞ୍ଚଳ ହାସଲ କରିବା ପାଇଁ ସଂଗ୍ରାମ ମଧ୍ୟ କରୁଥିଲା, କିନ୍ତୁ ନୂଆ ଖାଦ୍ୟାଞ୍ଚଳଗୁଡ଼ିକ ସେମାନଙ୍କର ପ୍ରାକୃତିକ ଅବସ୍ଥାରେ ଯାହା ଦେଉଥିଲେ, ମାଙ୍କଡ଼ ପଲ ତାହା ହିଁ ଆଦାୟ କରୁଥଲା, ତା ଠାରୁ ଅଧିକ କିଛି ବି ନୁହେଁ, ଅଥଚ୍ ଅଜ୍ଞାତରେ ତାର ନିଜର ମଳ ଦ୍ୱାରା ମାଟିକୁ ଉର୍ବର କରୁଥିଲା। ସମସ୍ତ ସମ୍ଭାବ୍ୟ ଖାଦ୍ୟାଞ୍ଚଳ ଅଧିକୃତ ହୋଇ ଯିବା ସଙ୍ଗେ ସଙ୍ଗେ ମାଙ୍କଡ଼ମାନଙ୍କର ସଂଖ୍ୟା ଆଉ ବଢ଼ିପାରି ନଥିବ; ବେଶିରୁ ବେଶି ପ୍ରାଣୀମାନଙ୍କର ସଂଖ୍ୟା ସ୍ଥିର ହୋଇ ରହି ଯାଇଥିବ। କିନ୍ତୁ ପ୍ରାଣୀମାନେ ସମସ୍ତେ ବହୁ ପରିମାଣର ଖାଦ୍ୟ ନଷ୍ଟ କରନ୍ତି ଏବଂ, ତା ଛଡ଼ା, ଖାଦ୍ୟ ଯୋଗାଣର ପର ପିଢ଼ିକୁ ଅଙ୍କୁର ଅବସ୍ଥାରେ ହିଁ ନଷ୍ଟ କରି ଦିଅନ୍ତି। ହରିଣୀ

ବଞ୍ଚିଥିଲେ ପରବର୍ତ୍ତୀ ବର୍ଷରେ ତାର ଛୁଆଗୁଡ଼ିକୁ ଶିକାର କରି ହେବ ଭାବି ଶିକାରୀ ହରିଣୀକୁ ଛାଡ଼ି ଦିଏ, କିନ୍ତୁ ହେଟା ଛାଡ଼େନି। ଗ୍ରୀସ୍‌ରେ ଛେଳିମାନେ, ଯେଉଁମାନେ ବୁଦାଗୁଡ଼ିକୁ ପୁରାପୁରି ବଢ଼ିବା ପୂର୍ବରୁ କଅଁଳ ଅବସ୍ଥାରେ ହିଁ ଖାଇ ଯାଆନ୍ତି, ଖାଇ ଖାଇ ଦେଶର ସମସ୍ତ ପାହାଡ଼ ପର୍ବତକୁ ଲଣ୍ଡା କରି ଦେଲେଣି। ପ୍ରାଣୀମାନଙ୍କର ଏହି ''ଲୁଣ୍ଠନ ଅର୍ଥନୀତି'' ("predatory economy") ଜାତି ପ୍ରଜାତିଗୁଡ଼ିକର କ୍ରମ ରୂପାନ୍ତର ପ୍ରକ୍ରିୟାରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥାଏ। ଚିରାଚରିତ ଖାଦ୍ୟ ବଦଳରେ ଅନ୍ୟାନ୍ୟ ଖାଦ୍ୟ ଖାଇ ଚଳିବା ପାଇଁ ଜାତି ପ୍ରଜାତିଗୁଡ଼ିକୁ ବାଧ କରିଥାଏ ଏବଂ, ଫଳ ସ୍ୱରୂପ, ସେମାନଙ୍କର ରକ୍ତରେ ଏକ ଭିନ୍ନ ରାସାୟନିକ ସମାହାର ସଂଗଠିତ ହେବା ଦ୍ୱାରା ସମଗ୍ର ଶାରୀରିକ ଗଠନରେ କ୍ରମ ପରିବର୍ତ୍ତନ ଘଟିଥାଏ। ଯେଉଁ ଜାତି ପ୍ରଜାତିଗୁଡ଼ିକ ପରିବର୍ତ୍ତିତ ପରିସ୍ଥିତି ସହ ନିଜକୁ ଖାପ ଖୁଆଇ ପାରୁ ନଥିଲେ, ଲୋପ ପାଇ ଯାଉଥିଲେ। ଏହା ନିଃସନ୍ଦେହ ଯେ, ଆମ ପୂର୍ବଜମାନଙ୍କର ବାନରରୁ ମଣିଷକୁ ଅବସ୍ଥାନ୍ତରରେ ଏହି ଲୁଣ୍ଠନ ଅର୍ଥନୀତିର ଏକ ଶକ୍ତିଶାଳୀ ଭୂମିକା ଥିଲା। ଅନ୍ୟାନ୍ୟ ପ୍ରଜାତି ଠୁଁ ମାନସିକ ଶକ୍ତିରେ ତଥା ପରିବର୍ତ୍ତିତ ପରିସ୍ଥିତିରେ ନିଜକୁ ଖାପ ଖୁଆଇବା କ୍ଷମତାରେ ଆଗୁସାର ଥିବା ବାନରମାନଙ୍କ ଏହି ପ୍ରଜାତି କ୍ଷେତ୍ରରେ ଏହି ଲଣ୍ଠନ ଅର୍ଥନୀତି ଭକ୍ଷ୍ୟ ବୃକ୍ଷଲତାଦିର ସଂଖ୍ୟାରେ ନିରନ୍ତର ବୃଦ୍ଧି ଘଟାଇଥିବ ଓ ଖାଦ୍ୟ ପାଇଁ ବ୍ୟବହୃତ ହେଉଥିବା ବୃକ୍ଷଲତାର ବିଭିନ୍ନ, ଅଧିକରୁ ଅଧିକ ଭକ୍ଷ୍ୟ ଅଂଶଗୁଡ଼ିକୁ ଖାଇବା ପାଇଁ ବାଧ କରିଥିବ। ସଂକ୍ଷେପରେ କହିଲେ, ଖାଦ୍ୟରେ ଅଧିକରୁ ଅଧିକ ବିବିଧତା ଦେଖା ଦେଲା, ତାହା ସହ ଦେଖା ଦେଲା ଦେହ ଭିତରକୁ ପ୍ରବେଶ କରୁଥିବା ଉପାଦାନଗୁଡ଼ିକରେ ବିବିଧତା, ଯେଉଁ ଉପାଦାନମାନ

ବାନରରୁ ମଣିଷକୁ ଅବସ୍ଥାନ୍ତର ପାଇଁ ରାସାୟନିକ ଭିତ୍ତି ଥିଲା। ତଥାପି ସେ ସବୁ, ''ଶ୍ରମ'' ଶବ୍ଦର ଯଥାର୍ଥ ଅର୍ଥରେ ଶ୍ରମ ନଥିଲା। ହାତହତିଆର ତିଆରି କରିବା ମଧ୍ୟ ଦେଇ ହିଁ ଶ୍ରମ ଆରମ୍ଭ ହୋଇଥାଏ। କେଉଁ କେଉଁ ପ୍ରାଚୀନତମ ହାତହତିଆର ଆମେ ପାଉ? — ପ୍ରାଗୈତିହାସିକ ମଣିଷମାନଙ୍କର ଯେଉଁସବୁ ବସ୍ତୁ ଆମେ ଆବିଷ୍କାର କରି ଉତ୍ତରାଧିକାରୀ ଭାବେ ପାଇଛେ ତା ଦୃଷ୍ଟିରୁ, ଆଦ୍ୟତମ ଐତିହାସିକ ମଣିଷମାନଙ୍କର ତଥା ସମସାମୟିକ ବଣୁଆ ମଣିଷମାନଙ୍କ ମଧ୍ୟରେ ନିହାତି ଅମାର୍ଜିତ ଯିଏ ସେମାନଙ୍କର ଜୀବନ ଶୈଳୀ ଦୃଷ୍ଟିରୁ ପ୍ରାଚୀନତମ ବିଚାର କରା ଯାଉଥିବା କେଉଁ କେଉଁ ହାତହତିଆର ଆମେ ପାଉ? ଯେଉଁ ଯେଉଁ ପ୍ରାଚୀନତମ ହାତହତିଆର ଆମେ ପାଉ ତାହା ହେଲା ଶିକାରକରା ଓ ମାଛଧରା ହାତହତିଆର। ଶିକାରକରା ହାତହତିଆର ଅସ୍ତ୍ରର କାମ ମଧ୍ୟ କରୁଥିଲା। କିନ୍ତୁ ଶିକାରକରିବା ଓ ମାଛଧରିବା ତ ନିରୋଳା ଉଦ୍ଭିଦ ଜାତୀୟ ଖାଦ୍ୟ ଖାଇବା ଅବସ୍ଥାରୁ ତା ସହ ମାଂସକୁ ମଧ୍ୟ ଖାଦ୍ୟ ରୂପେ ଖାଇବା ଅବସ୍ଥାନ୍ତରକୁ ବୁଝାଇ ଥାଏ ଏବଂ ବାନରରୁ ମଣିଷକୁ ଅବସ୍ଥାନ୍ତର ଧାରାରେ ଏହା ହେଉଛି ଏକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ। ଜୈବିକ-ଦେହ ତାର ଅଭିବୃଦ୍ଧି ଓ ଶକ୍ତି ସଞ୍ଚାର ପ୍ରକ୍ରିୟା (metabolism) ପାଇଁ ଆବଶ୍ୟକ କରୁଥିବା ନିହାତି ଜରୁରି ଉପାଦାନମାନ *ଆମିଷ ଖାଦ୍ୟ* ରେ ଆଗରୁ ପ୍ରସ୍ତୁତ ଅବସ୍ଥାରେ ରହିଥାଏ। ଏହା ପରିପାକ ପାଇଁ ଆବଶ୍ୟକୀୟ ସମୟ କମେଇବା ସଙ୍ଗେ ସଙ୍ଗେ ଉଦ୍ଭିଦ ଜୀବନ ଅନୁରୂପ ଅନ୍ୟାନ୍ୟ ଅଭିବୃଦ୍ଧି ଓ ବିକାଶମୂଳକ ଦୈହିକ ପ୍ରକ୍ରିୟା (other vegitative bodily processes) ର ସମୟ ମଧ୍ୟ କମେଇଲା, ଓ ଏହି ଭାବେ ଯଥାର୍ଥ ପ୍ରାଣୀ ଜୀବନର କ୍ରିୟାଶୀଳ ପ୍ରସ୍ଫୁଟନ ପାଇଁ ଆହୁରି ସମୟ, ଉପାଦାନ ଓ ଇଚ୍ଛା

ଯୋଗାଇଲା। ଗଢ଼ି ଉଠୁଥିବା ମଣିଷଟି ଉଦ୍ଭିଦ ଜଗତ ଠାରୁ ଯେତିକି ଯେତିକି ଦୂରେଇ ଗଲା ପ୍ରାଣୀ ଜଗତ ଠାରୁ ସେତିକି ସେତିକି ଉର୍ଦ୍ଧ୍ୱକୁ ଉଠିଲା। ଆମିଷ ସହ ନିରାମିଷ ଖାଦ୍ୟ ଖାଇବାରେ ଅଭ୍ୟସ୍ତ ହେବା ଯୋଗୁଁ ହିଂସ୍ର ବିରାଢ଼ି ଓ କୁକୁରମାନଙ୍କ କ୍ଷେତ୍ରରେ ଯେମିତି ପରିବର୍ତ୍ତନ ଘଟି ସେମାନେ ମଣିଷର ସେବକ ପାଲଟି ଗଲେ, ଠିକ୍ ସେମିତି ନିରାମିଷ ସହ ଆମିଷ ଖାଦ୍ୟ ଭୋଜନ, ଗଢ଼ି ଉଠୁଥିବା ମଣିଷଟିକୁ ଦୈହିକ ବଳ ଓ ସ୍ୱାଧୀନତା ପ୍ରଦାନ କରିବାରେ ଅତ୍ୟନ୍ତ ସହାୟକ ହୋଇଥିଲା। ହେଲେ, ଆମିଷ ଭୋଜନର ସବୁଠାରୁ ବେଶି ପ୍ରଭାବ ମସ୍ତିଷ୍କ ଉପରେ ପଡ଼ିଥିଲା। ମସ୍ତିଷ୍କ ତାର ପୋଷଣ ଓ ବିକାଶ ପାଇଁ ଆବଶ୍ୟକୀୟ ଉପାଦାନମାନ ପ୍ରଚୁର ପରିମାଣରେ ପାଇଲା ଓ, ତେଣୁକରି, ପିଢ଼ିଏ ପରେ ଆଉ ପିଢ଼ିକୁ ଦ୍ରୁତତର ବେଗରେ ତଥା ଅଧିକ ନିପୁଣତାର ସହ ତାର ବିକାଶ ଘଟିଲା। ନିରାମିଷାଶୀମାନଙ୍କ ପ୍ରତି ସମସ୍ତ ଯଥାଯୋଗ୍ୟ ମାନ୍ୟତା ଥାଇ ଏହା କହିବାକୁ ପଡୁଛି ଯେ ଆମିଷ ଆହାର ବିନା ମଣିଷ ଉଦ୍ଭବ ହୋଇ ନାହିଁ। ଏବଂ ଯଦି ଆମିଷାଶୀମାନେ, ଯେଉଁ ସମସ୍ତ ମଣିଷମାନଙ୍କ ସମ୍ପର୍କରେ ଆମମାନଙ୍କୁ ଜଣା ସେମାନେ ସମସ୍ତେ, କୌଣସି ନାଁ କୌଣସି ସମୟରେ ସ୍ୱଜାତୀୟ ମାଂସ ଭକ୍ଷଣ କରୁଥିଲେ (ଯେମିତି ଦଶମ ଶତାବ୍ଦୀ ପର୍ଯ୍ୟନ୍ତ ବର୍ଲ୍ଲିନବାସୀ, ୱେଲେତାବିଏନ୍ ଓ ୱିଲିଜିଏନ୍‌ମାନେ ସେମାନଙ୍କର ପିତାମାତାଙ୍କୁ ଭକ୍ଷଣ କରୁଥିଲେ)[୧୦], ତେବେ ସେକଥା ଆମ ପାଇଁ ଆଜି ନିହାତି ତୁଚ୍ଛ କଥା ହୋଇ ଯାଇଛି।

ଆମିଷ ଖାଦ୍ୟ ଦୁଇଟି ନୂତନ ନିଷ୍ପତ୍ତିମୂଳକ ପ୍ରଧାନ ଅଗ୍ରଗତି ଘଟେଇଲା — ନିଆଁକୁ ଆୟତ୍ତ କରି କାମରେ ଲଗେଇବା ଓ ପ୍ରାଣୀମାନଙ୍କୁ

ପୋଷା ମନେଇବା। ପ୍ରଥମଟି, କହିବାକୁ ଗଲେ, କିଛିଟା ପରିପାକ ହୋଇ ସାରିଥିବା ଖାଦ୍ୟ ପାଟିକୁ ଯୋଗେଇବା ଦ୍ୱାରା ପରିପାକ ପ୍ରକ୍ରିୟାକୁ ଆହୁରି ଅଧିକ ସଂକ୍ଷିପ୍ତ କରିଦେଲା; ଦ୍ୱିତୀୟଟି, ଶିକାର ଦ୍ୱାରା ପ୍ରାପ୍ତ ମାଂସ ସାଙ୍ଗକୁ ଆଉ ଏକ ନୂଆ, ଅଧିକ ନିୟମିତ ଉତ୍ସ ଖୋଲି ମାଂସ ଯୋଗାଣରେ ପ୍ରାଚୁର୍ଯ୍ୟତା ଆଣି ଦେଲା। ତା ଛଡ଼ା, ଏକ ନୂଆ ଧରଣର ଖାଦ୍ୟ ଦୁଧ ଓ ଦୁଧଜାତ ପଦାର୍ଥ ଆକାରରେ ଯୋଗେଇଲା, ଯାହା ଉପାଦାନ ଦୃଷ୍ଟିରୁ ଅନ୍ତତଃପକ୍ଷେ ମାଂସ ଭଳି ମୂଲ୍ୟବାନ ଥିଲା। ଏହି ଭାବେ ଏହି ଦୁଇଟିଯାକ ଅଗ୍ରଗତି, ଆପେ ଆପେ, ମଣିଷର ମୁକ୍ତି ପାଇଁ ନୂଆ ମାଧ୍ୟମ ଥିଲା। ମଣିଷ ଓ ସମାଜର ବିକାଶ ପାଇଁ ସେଗୁଡ଼ିକର ମହାନ ଗୁରୁତ୍ୱ ସତ୍ତ୍ୱେ ସେଗୁଡ଼ିକର ଗୌଣ ପ୍ରଭାବର ବିସ୍ତାରିତ ଆଲୋଚନା କରି ବସିଲେ ଆମେ ଆଲୋଚ୍ୟ ବିଷୟ ଠାରୁ ବହୁ ଦୂରକୁ ଚାଲିଯିବା।

ମଣିଷ ଯେପରି ଯାହା ଖାଇବା ଯୋଗ୍ୟ ତାହା ଖାଇବା ଶିଖିଲା, ଠିକ୍ ସେପରି ଯେକୌଣସି ଜଳବାୟୁରେ ବି ବସବାସ କରିବା ଶିଖିଲା। ବାସପୋଯୋଗୀ ଜଗତ ସାରା ସେ ବ୍ୟାପୀବାରେ ଲାଗିଲା ଏବଂ ସେ ଦିଗରେ ସେ ହିଁ ଥିଲା ଏକମାତ୍ର ପ୍ରାଣୀ ଯିଏ ସ୍ୱଇଚ୍ଛାରେ ତାହା କରି ପାରୁଥିଲା। ଅନ୍ୟାନ୍ୟ ପ୍ରାଣୀମାନେ — ଗୃହପାଳିତ ତଥା ପରାନ୍ନପୁଷ୍ଟ ପ୍ରାଣୀମାନେ — ଯେଉଁମାନେ ସମସ୍ତ ପ୍ରକାର ଜଳବାୟୁରେ ବଞ୍ଚିବା ପାଇଁ ଅଭ୍ୟସ୍ତ ହୋଇଛନ୍ତି, ସେମାନେ ତାହା ସ୍ୱାଧୀନ ଭାବେ ହୋଇ ନାହାଁନ୍ତି, କେବଳ ମଣିଷର ଅନୁଚର ହୋଇ ହୋଇଛନ୍ତି। ବର୍ଷସାରା ସମାନ ଉଷ୍ମତା ରହୁଥିବା ତାର ମୂଳ ବାସସ୍ଥଳୀରୁ ମଣିଷ ଯେତେବେଳେ ଅପେକ୍ଷାକୃତ ଥଣ୍ଡା

ଅଞ୍ଚଳକୁ ଗଲା, ଯେଉଁଠି ବର୍ଷଟା ଗ୍ରୀଷ୍ମ ଓ ଶୀତ ଋତୁରେ ବିଭାଜିତ ହୋଇଥିଲା, ନୂଆ ଆବଶ୍ୟକତାମାନ ସୃଷ୍ଟି ହେଲା — ଥଣ୍ଡା ଓ ଆଦ୍ରତାରୁ ରକ୍ଷା ପାଇବା ପାଇଁ ଆବଶ୍ୟକ ହେଲା ଆଶ୍ରୟସ୍ଥଳୀ ଓ ପୋଷାକ। ଏହି ଭାବେ ଶ୍ରମ ପାଇଁ ନୂଆ ନୂଆ ଦିଗ ଖୋଲିଗଲା, କ୍ରିୟାକଳାପର ନୂଆ ନୂଆ ଆକାର ସୃଷ୍ଟି ହେଲା, ଯାହା ମଣିଷକୁ ପ୍ରାଣୀମାନଙ୍କ ଠାରୁ ଆହୁରି, ଆହୁରି ପୃଥକ କରିଦେଲା।

ହାତ, ବାଗ୍‌ଯନ୍ତ୍ର ଓ ମସ୍ତିଷ୍କର ମିଳିତ କ୍ରିୟା ଦ୍ୱାରା ମଣିଷ, କେବଳ ପ୍ରତ୍ୟେକ ବ୍ୟକ୍ତି କ୍ଷେତ୍ରରେ ନୁହେଁ ସମାଜ କ୍ଷେତ୍ରରେ ମଧ୍ୟ, ଜଟିଳରୁ ଜଟିଳତର କାର୍ଯ୍ୟମାନ ସମ୍ପାଦନ କରି ପାରିଲା, ଏବଂ ଉଚ୍ଚରୁ ଉଚ୍ଚତର ଲକ୍ଷ୍ୟମାନ ଧାର୍ଯ୍ୟ କରିବା ଓ ସେଗୁଡ଼ିକୁ ହାସଲ କରିବା ପାଇଁ ସକ୍ଷମ ହେଲା। ପ୍ରତ୍ୟେକ ପିଢ଼ିର ନିଜସ୍ୱ କାର୍ଯ୍ୟ ପୃଥକ ହେବା ସଙ୍ଗେ ସଙ୍ଗେ ଅଧିକ ନିପୁଣ ଓ ଅଧିକ ନାନାବିଧ ହେବାରେ ଲାଗିଲା। ଶିକାର ଓ ପଶୁପାଳନ ସହ କୃଷିକୁ ଯୋଡ଼ାଗଲା, ତାପରେ ଆସିଲା ସୁତାକଟା, ଲୁଗାବୁଣା, ଧାତୁକାରିଗରି, କୁମ୍ଭାରକାମ ଏବଂ ନୌଚାଳନା। ବାଣିଜ୍ୟ ଓ ଶିଳ୍ପ ସହ ପରିଶେଷରେ ଦେଖା ଦେଲା କଳା ଓ ବିଜ୍ଞାନ। ଗୋଷ୍ଠୀଗୁଡ଼ିକ ଜାତି ଓ ରାଷ୍ଟ୍ରକୁ ବିକଶିତ ହେଲେ। ଆଇନକାନୁନ୍ ଓ ରାଜନୀତିର ଅଭ୍ୟୁତ୍ଥାନ ହେଲା, ଓ ତା ସହ ଅଭ୍ୟୁଦୟ ହେଲା ମାନବୀୟ ମନରେ ମାନବୀୟ ବସ୍ତୁସମୁହର ସେହି ବୈଚିତ୍ର୍ୟମୟ ପ୍ରତିବିମ୍ବ — ଧର୍ମ। ଏମିତି ଉପରଠାଉରିଆ ଭାବେ ଦେଖିଲେ ମନର ଉତ୍ପାଦନ ଭଳି ବୋଧ ହେଉଥିବା ଓ ମାନବ ସମାଜ ଉପରେ ଆଧିପତ୍ୟ ବିସ୍ତାର କଲା ଭଳି ଜଣା ପଡୁଥିବା ଏହି ସମସ୍ତ ଚିତ୍ରର ସାମନାରେ,

କର୍ମତତ୍ପର ହାତର ଅତି ନିରାଡ଼ମ୍ବରିଆ ଉତ୍ପାଦନମାନ ଅନ୍ତରାଳରେ ଉଭେଇ ଯାଇଥିଲା। ଏପରି ଘଟିବାର ଅଧିକତର କାରଣ ହେଲା ସମାଜର ବିକାଶର ଅତି ଆଦ୍ୟ କାଳରେ ମଧ୍ୟ (ଉଦାହରଣ ସ୍ୱରୂପ, ପରିବାରର ଆଦିମ ସ୍ଥିତିରେ ମଧ୍ୟ), ଶ୍ରମ ପାଇଁ ନକସା କରି ପାରୁଥିବା ମନ ନକସା କରା ଯାଇଥିବା ଶ୍ରମକୁ ନିଜ ହାତ ଦ୍ୱାରା ନ କରି ଅନ୍ୟ ହାତ ଦ୍ୱାରା କରେଇ ନେବା ପାଇଁ ସକ୍ଷମ ହେଉଥିଲା। ସଭ୍ୟତାର ଦ୍ରୁତ ଅଗ୍ରଗତି ପାଇଁ ଯାହା କିଛି ସଫଳତା ତାହା ମନ ଯୋଗୁଁ, ମସ୍ତିଷ୍କର ବିକାଶ ଓ କାର୍ଯ୍ୟକଳାପ ଯୋଗୁଁ ବୋଲି କୁହା ଯାଉଥିଲା। ସେମାନଙ୍କର ସମସ୍ତ କାର୍ଯ୍ୟକଳାପ ଆବଶ୍ୟକତା (ଯାହା ଯେକୌଣସି ପରିସ୍ଥିତିରେ ବି ମନରେ ପ୍ରତିଫଳିତ ହୋଇଥାଏ ଓ ମନ ମଧ୍ୟରେ ଦେଖି ହୁଏ) ରୁ ଜାତ ବୋଲି ବ୍ୟାଖ୍ୟା କରିବା ପରିବର୍ତ୍ତେ ମନରୁ ଜାତ ବୋଲି କହିବାରେ ମଣିଷମାନେ ଅଭ୍ୟସ୍ତ ହୋଇଗଲେ — ଏବଂ ଏହି ଭାବେ କାଳକ୍ରମେ ସେହି ଭାବବାଦୀ ବିଶ୍ୱ ଦୃଷ୍ଟିକୋଣ ଜାତ ହେଲା ଯାହା, ବିଶେଷ କରି ପ୍ରାଚୀନ ସଂସାରର ପତନ ପରଠାରୁ, ମଣିଷ ମନରେ ଅଧିକାର ଜମେଇ ବସିଛି। ଏହି ଅଧିକାର ତାହା ଏପରି ମାତ୍ରାରେ ଜମେଇ ବସିଛି ଯେ ଡାରଓ୍ୱିନ୍‌ପନ୍ଥୀଙ୍କ ଭଳି ଅତ୍ୟନ୍ତ ବସ୍ତୁବାଦୀ ପ୍ରାକୃତିକ ବିଜ୍ଞାନୀମାନେ ମଧ୍ୟ ମଣିଷର ଉତ୍ପତ୍ତି ବିଷୟ ନେଇ କୌଣସି ଭାବର ଏକ ସ୍ପଷ୍ଟ ଧାରଣା ସୃଷ୍ଟି କରିବା ପାଇଁ ଅକ୍ଷମ। ତାର କାରଣ ହେଲା, ଏହି ମତାଦର୍ଶର ପ୍ରଭାବରେ ସେମାନେ ମଣିଷର ଉତ୍ପତ୍ତି ପ୍ରକ୍ରିୟାରେ ଶ୍ରମର ଭୂମିକାକୁ ସ୍ୱୀକୃତି ଦିଅନ୍ତିନି।

ମଣିଷମାନେ ସେମାନଙ୍କର ପରିବେଶକୁ ଯେତିକି ପରିମାଣରେ ବଦଳେଇ ପାରନ୍ତି ପ୍ରାଣୀମାନେ ସେତିକି ପରିମାଣରେ ବଦଳେଇ ନ ପାରିଲେ ସୁଦ୍ଧା ମଣିଷମାନଙ୍କ ଭଳି ସେମାନେ, ପୂର୍ବରୁ ଏହା ସୂଚୀତ ହୋଇ ସାରିଛି ଯେ, ସେମାନଙ୍କର କାର୍ଯ୍ୟକଳାପ ଜରିଆରେ ପରିବେଶକୁ ବଦଳେଇ ଥାନ୍ତି। ଏହି ପରିବର୍ତ୍ତନ, ଆମେ ଦେଖିଛେ, ଓଲଟି ପରିବର୍ତ୍ତନକାରୀଙ୍କ ଉପରେ ପ୍ରତିକ୍ରିୟା ସୃଷ୍ଟି କରେ ଓ ସେମାନଙ୍କୁ ମଧ ବଦଳାଏ। ପ୍ରକୃତି ଜଗତରେ ପୃଥକ ରୂପେ, ନିରୋଳାରେ କୌଣସି ଘଟଣା ଘଟେନା। ପ୍ରତ୍ୟେକଟା ଘଟଣା ଅନ୍ୟ ସମସ୍ତ ଘଟଣାକୁ ପ୍ରଭାବିତ କରିଥାଏ ଓ ଅନ୍ୟ ସମସ୍ତଙ୍କ ଦ୍ୱାରା ପ୍ରଭାବିତ ବି ହୋଇଥାଏ। ଏବଂ ଅଧିକାଂଶ କ୍ଷେତ୍ରରେ ଏହି ବହୁମୁଖୀ ଗତି ଓ କ୍ରିୟାପ୍ରତିକ୍ରିୟାକୁ ଭୁଲି ଯାଉଥିବା ଯୋଗୁଁ ହିଁ ଆମର ପ୍ରକୃତି ବିଜ୍ଞାନୀମାନେ ସରଳତମ ବସ୍ତୁଗୁଡ଼ିକ ସମନ୍ଧରେ ସ୍ପଷ୍ଟ ଧାରଣା (insight) ପାଇବାରୁ ବଞ୍ଚିତ ହୁଅନ୍ତି। ଛେଳିମାନେ ଗ୍ରୀସ୍‌ରେ କିପରି ନୂତନ ଜଙ୍ଗଲ ସୃଷ୍ଟି ହେବାରେ ପ୍ରତିବନ୍ଧକ ହୋଇଛନ୍ତି ତାହା ଆମେ ଦେଖିଛେ; ସେଣ୍ଟ୍ ହେଲେନା ଦ୍ୱୀପରେ ପ୍ରଥମ ଆଗନ୍ତୁକମାନେ ଆଣିଥିବା ଛେଳି ଓ ଘୁଷୁରିଗୁଡ଼ିକ ସେଠାରେ ଥିବା ଗଛବୃକ୍ଷକୁ ସଂପୂର୍ଣ୍ଣ ରୂପେ ଧ୍ୱଂସ କରି ଦେଇଥିଲେ ଯାହାରି ଫଳରେ ପର କାଳର ନାବିକ ଓ ଉପନିବେଶବାଦୀମାନେ ଆଣିଥିବା ଗଛବୃକ୍ଷର ପ୍ରସାର ପାଇଁ ଭିତ୍ତିଭୂମି ପ୍ରସ୍ତୁତ ହୋଇଥିଲା। କିନ୍ତୁ ପ୍ରାଣୀମାନେ ସେମାନଙ୍କର ପରିବେଶ ଉପରେ ସ୍ଥାୟୀ ପ୍ରଭାବ ପକାଇ ଥାଆନ୍ତି ଅନିଚ୍ଛାକୃତ ଭାବେ ଏବଂ, ଖୋଦ୍ ପ୍ରାଣୀମାନଙ୍କ ଉପରେ ପଡୁଥିବା ପ୍ରଭାବ କଥା କହିଲେ, ତାହା ହୋଇଥାଏ ଆକସ୍ମିକ ଭାବେ। ମଣିଷ ପ୍ରାଣୀମାନଙ୍କ ଠାରୁ ଯେତିକି ଦୂରକୁ ଦୂରେଇ ଯାଇଥାଏ, ପ୍ରକୃତି ଉପରେ ମଣିଷର ପ୍ରଭାବର

ଚରିତ୍ର ଏକ ନିର୍ଦ୍ଦିଷ୍ଟ ପୂର୍ବଅବଧାରିତ ଉଦ୍ଦେଶ୍ୟ ସାଧନ ଦୃଷ୍ଟିରୁ ସେତିକି ଅଧିକ ପୂର୍ବଚିନ୍ତିତ, ପରିକଳ୍ପିତ କାର୍ଯ୍ୟ ହୋଇଥାଏ। ସେ କଅଣ କରୁଛି ତାହା ହୃଦୟଙ୍ଗମ ନ କରି ପ୍ରାଣୀଟିଏ ଗୋଟିଏ ଅଞ୍ଚଳର ଗଛବୃକ୍ଷ ନଷ୍ଟ କରି ପକାଏ। ମଣିଷ ତାକୁ ନଷ୍ଟ କରେ — ଏହି ଭାବେ ମୁକ୍ତ ହୋଇଥିବା ଜମିରେ ବିହନ ବୁଣି ଫସଲ ଆଦାୟ କରିବା ଉଦ୍ଦେଶ୍ୟରେ। ଅବା ସେଥିରେ ଗଛଟିଏ ବା ଲତାଟିଏ ଲଗାଇଲା ବେଳେ ସେ ଜାଣିଥାଏ ଯେ ସେ ଯେଉଁ ପରିମାଣରେ ଲଗାଇଲା ତାର ବହୁ ଗୁଣ ଫେରି ପାଇବ। ସେ ଗୋଟିଏ ଦେଶର ଉପକାରୀ ଗଛବୃକ୍ଷ ଓ ଗୃହପାଳିତ ଜୀବଜନ୍ତୁ ଅନ୍ୟ ଦେଶକୁ ନେଇଯାଏ ଏବଂ ଏହି ଭାବେ ସମଗ୍ର ମହାଦେଶଗୁଡ଼ିକର ଗଛବୃକ୍ଷ ଓ ପ୍ରାଣୀ ଜଗତରେ ପରିବର୍ତ୍ତନ ଘଟାଇଥାଏ। ଏହାଠାରୁ ବଡ଼ କଥା ହେଲା — ମଣିଷର ହାତ ସାହାଯ୍ୟରେ କୃତ୍ରିମ ପ୍ରଜନନ ଦ୍ୱାରା ଗଛବୃକ୍ଷ ଓ ପ୍ରାଣୀ ଉଭୟେ ଏପରି ପରିବର୍ତ୍ତିତ ହୋଇ ଯାଆନ୍ତି ଯେ ସେମାନଙ୍କୁ ଚିହ୍ନି ହୁଏନି। କେଉଁ କେଉଁ ଆଦ୍ୟ ବନ୍ୟ ଉଦ୍ଭିଦରୁ ଆମର ଖାଦ୍ୟସଶ୍ୟ ପ୍ରଦାନ କରୁଥିବା ଉଦ୍ଭିଦର ଉତ୍ପତ୍ତି ହେଇଛି ତାର ସନ୍ଧାନ ଆଜି ବି ଚାଲୁ ରହିଛି, ନିଷ୍ଫଳ ହେଉଛି। କେଉଁ କେଉଁ ବନ୍ୟ ପ୍ରାଣୀ ଠାରୁ ଆମର ବିଭିନ୍ନ ଜାତିର କୁକୁର ଓ ଆମର ଅସଂଖ୍ୟ ଜାତିର ଘୋଡ଼ା ଉଦ୍ଭବ ହୋଇଛି ତାହା ଆଜି ବି ଏକ ବିବାଦୀୟ ବିଷୟ ହୋଇ ରହିଛି।

ଏହା ନ କହିଲେ ମଧ୍ୟ ଚଳିବ ଯେ ଏକ ପରିକଳ୍ପିତ ଓ ପୂର୍ବଚିନ୍ତିତ ରୀତିରେ କାର୍ଯ୍ୟ କରିବାର କ୍ଷମତା ଯେ ପ୍ରାଣୀମାନଙ୍କର ରହିଛି ଏହାକୁ ନେଇ ଆମ ମନରେ କେବେ ହେଁ ବିବାଦ ଜାତ ହେବାର କଥା ନୁହେଁ। ଓଲଟି, ଯେଉଁଠି ଯେଉଁଠି ଆଦିଜୀବକ ବା ପ୍ରୋଟୋପ୍ଲାଜମ୍ ରହିଛି, ଜୀବନ୍ତ

ଏଲ୍‌ବୁମେନ୍‌[୧୧] ରହିଛି ଓ ତାହା ପ୍ରତିକ୍ରିୟା ପ୍ରଣୋଦିତ, ଅର୍ଥାତ୍, ନିର୍ଦ୍ଦିଷ୍ଟ ବାହ୍ୟ ପ୍ରେରଣାର ବଶ୍ୟବର୍ତ୍ତୀ ହୋଇ, ନିହାତି ସରଳ ପ୍ରକାରର ହେଲେ ସୁଦ୍ଧା, ନିର୍ଦ୍ଦିଷ୍ଟ ରୂପର ପ୍ରତିକ୍ରିୟା ସୂତ୍ରପାତ କରିବା ପାଇଁ ସମର୍ଥ, ସେଇଠି ସେଇଠି ଭ୍ରୁଣ ମଧ୍ୟରେ ହିଁ ପରିକଳ୍ପିତ ଧାରାରେ କାର୍ଯ୍ୟ କରିବାର କ୍ଷମତା ରହିଥାଏ। ସ୍ନାୟୁ କୋଷ କଥା ତେଣିକି ଥାଉ, କୋଷ ନଥିଲେ ବି ଏହି ଭଳିଆ ପ୍ରତିକ୍ରିୟା ସୃଷ୍ଟି ହୋଇଥାଏ। କୀଟ ପତଙ୍ଗ ଭକ୍ଷଣକାରୀ ବୃକ୍ଷଲତାଗୁଡ଼ିକ ସେମାନଙ୍କର ଶିକାରକୁ ଯେପରି ଅକ୍ତିଆର କରନ୍ତି, ତାହା ଦେଖିଲେ ସେଥିରେ ଯୋଜନାବଦ୍ଧ କାର୍ଯ୍ୟ ଥିବା ଭଳି ମନେ ହୁଏ, ଯଦିଚ୍ ସେମାନେ ତାହା ସମ୍ପୂର୍ଣ୍ଣ ରୂପେ ଅଚେ଼ତନ ଅବସ୍ଥାରେ କରିଥାନ୍ତି। ପ୍ରାଣୀମାନଙ୍କ କ୍ଷେତ୍ରରେ ଯାହାର ସ୍ନାୟୁତନ୍ତ୍ରର ବିକାଶ ଯେତେ ବେଶି ସଚେ଼ତନ ଭାବରେ ପରିକଳ୍ପିତ କାର୍ଯ୍ୟ କରିବା କ୍ଷମତା ଆନୁପାତିକ ଭାବେ ସେତେ ବେଶି ଏବଂ ସ୍ତନପାୟୀ ପ୍ରାଣୀମାନଙ୍କ କ୍ଷେତ୍ରରେ ତ ଏହା ଅନେକଟା ଉଚ୍ଚ ପର୍ଯ୍ୟାୟରେ ପହଞ୍ଚି ଥାଏ। ଇଂଲଣ୍ଡରେ କୋକଶିଆଳ ଶିକାର ବେଳେ କୋକଶିଆଳ ତା ପଛରେ ଦୌଡୁଥିବା ଶିକାରୀକୁ ଭୁଆଁ ବୁଲେଇବା ପାଇଁ ସେହି ଅଞ୍ଚଳ ସମ୍ପର୍କରେ ଥିବା ତାର ଚମତ୍କାର ଜ୍ଞାନକୁ କିପରି କେତେ ନିର୍ଭୁଲ ଭାବରେ କାମରେ ଲଗେଇ ଥାଏ, ଓ ତାର ନିଜର ଦେହର ଗନ୍ଧକୁ ଲୁଚେ଼ଇ ପାରୁଥିବା ଭଳି ମାଟିର ଅନୁକୂଳ ଗୁଣଗୁଡ଼ିକୁ ସେ କିପରି ଭଲ ଭାବେ ଜାଣେ ଓ କାର୍ଯ୍ୟରେ ଲଗେଇ ଥାଏ ତାହା ଯେ କେହି ପ୍ରତିଦିନ ଲକ୍ଷ୍ୟ କରି ପାରିବେ। ମଣିଷର ସାହଚର୍ଯ୍ୟ ଯୋଗୁଁ ଅନେକଟା ବେଶି ବିକଶିତ ହୋଇପାରି ଥିବା ଗୃହପାଳିତ ପ୍ରାଣୀମାନଙ୍କ ମଧ୍ୟରେ ଶିଶୁମାନଙ୍କ କ୍ଷେତ୍ରରେ ଯେଉଁ ଭଳି ଚତୁରତା ଲକ୍ଷ୍ୟ କରାଯାଇ ଥାଏ ଠିକ୍ ସେହି ଭଳି ଚତୁରତା ବାରମ୍ବାର ଯେ କେହି ଲକ୍ଷ୍ୟ କରି

ପାରନ୍ତି। କାରଣ, ଠିକ୍ ଯେପରି ମାତୃ ଗର୍ଭରେ ମଣିଷ ଭ୍ରୂଣର ଅଭିବୃଦ୍ଧିର ଇତିହାସ ପୋକ ଜୋକଠାରୁ ଆରମ୍ଭ କରି କୋଟି କୋଟି ବର୍ଷକୁ ଆବୋରି ରହିଥିବା ଆମ ପୂର୍ବପୁରୁଷ ପ୍ରାଣୀମାନଙ୍କର ଦୈହିକ ବିବର୍ତ୍ତନର ଇତିହାସର ସଂକ୍ଷିପ୍ତ ପୁନରାବୃତ୍ତି ମାତ୍ର, ଠିକ୍ ସେପରି ମଣିଷ ଛୁଆର ବୌଦ୍ଧିକ ବିକାଶ ମଧ୍ୟ ସେଇ ଏକା ପୂର୍ବପୁରୁଷମାନଙ୍କର, ବିଶେଷକରି ପରବର୍ତ୍ତୀ କାଳର ପୂର୍ବପୁରୁଷମାନଙ୍କର ବୌଦ୍ଧିକ ବିକାଶର ଆହୁରି ଅଧିକ ସଂକ୍ଷିପ୍ତ ପୁନରାବୃତ୍ତି ମାତ୍ର। କିନ୍ତୁ ସମସ୍ତ ପ୍ରାଣୀମାନଙ୍କର ସକଳ ପରିକଳ୍ପିତ କାର୍ଯ୍ୟକଳାପ ଭୂପୃଷ୍ଠରେ ସେମାନଙ୍କର ଇଚ୍ଛାର ଛାପ ମାରିବା ପାଇଁ କେବେ ବି ସକ୍ଷମ ହୋଇନି। ତାହା କେବଳ ମଣିଷ ହିଁ କରି ପାରିଛି।

ସଂକ୍ଷେପରେ କହିଲେ, ପ୍ରାଣୀ ତାର ପରିବେଶକୁ କେବଳ *ବ୍ୟବହାର* କରିଥାଏ, ଏବଂ କେବଳ ତାର ଉପସ୍ଥିତି ଦ୍ୱାରା ତହିଁରେ କିଛିଟା ପରିବର୍ତ୍ତନ ଘଟେଇ ଥାଏ; କିନ୍ତୁ ମଣିଷ ତହିଁରେ ପରିବର୍ତ୍ତନ ଘଟେଇ ତାର ନିଜର ଲକ୍ଷ୍ୟ ହାସଲ ଉପଲକ୍ଷେ ତାକୁ ବାଧ୍ୟ କରିଥାଏ, ତାରି ଉପରେ *ପ୍ରଭୁତ୍ୱ ଜାରି* କରିଥାଏ। ଏହା ହିଁ ହେଉଛି ମଣିଷ ଓ ଅନ୍ୟ ପ୍ରାଣୀମାନଙ୍କ ମଧ୍ୟରେ ଚୂଡ଼ାନ୍ତ, ଅପରିହାର୍ଯ୍ୟ ପାର୍ଥକ୍ୟ। ଏବଂ, ପୁଣି ଥରେ କହିଲେ, ଶ୍ରମ ହିଁ ଏହି ପାର୍ଥକ୍ୟ[୧୨] ଘଟେଇ ଥାଏ।

ହେଲେ, ପ୍ରକୃତି ଉପରେ ମଣିଷର ଏହି ବିଜୟକୁ ନେଇ ଆମେ ଆତ୍ମପ୍ରଶଂସାରେ ବିମୋହିତ ହେବା ଉଚିତ ନୁହେଁ। କାରଣ ଏହି ଭଳିଆ ପ୍ରତ୍ୟେକଟା ବିଜୟ ପରେ ପ୍ରକୃତି ଆମ ପ୍ରତି ପ୍ରତିହିଂସା ପରାୟଣ ହୋଇଥାଏ। ଏହା ସତ ଯେ, ପ୍ରତ୍ୟେକଟି ବିଜୟର ଫଳାଫଳ ପ୍ରଥମେ

ଆମର ଆଶାନୁରୂପ ହୋଇଥାଏ। କିନ୍ତୁ ପରେ ପରେ ଯାହା ଘଟେ ତାହା ଭିନ୍ନ ରୂପ ନେଇଥାଏ, ଆମ ଆଶାର ବାହାରେ ହୋଇଥାଏ, ଏପରି କି ଅଧିକାଂଶ କ୍ଷେତ୍ରରେ ବିଜୟର ପ୍ରଥମ ଫଳାଫଳକୁ ରଦ୍ଦ କରି ଦେଇଥାଏ। ମେସୋପୋଟାମିଆ, ଗ୍ରୀସ୍, ଏସିଆ ମାଇନର ଓ ଅନ୍ୟତ୍ର ଯେଉଁମାନେ ଚାଷୋପଯୋଗୀ ଜମି ପାଇବା ପାଇଁ ଜଙ୍ଗଲକୁ ଧ୍ୱଂସ କରିଦେଲେ, ସେମାନେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲେ ଯେ ସେମାନେ ତାହା କରିବା ଦେଇ ଜଙ୍ଗଲ ସହ ଆଦ୍ରତା ସଂଗ୍ରହର କେନ୍ଦ୍ର ଓ ଆଧାରଗୁଡ଼ିକୁ ନଷ୍ଟ କରି ଦେଲେ ଓ ଦେଶଗୁଡ଼ିକର ବର୍ତ୍ତମାନର ଦୟନୀୟ ସ୍ଥିତି ପାଇଁ ଭିତ୍ତି ସ୍ଥାପନ କଲେ। ଆଲ୍‌ପ୍‌ସ୍ ପର୍ବତମାଳାର ଉତ୍ତରର ଢାଲୁ ଅଞ୍ଚଳର ପାଇନ୍ ଜଙ୍ଗଲ ଯତ୍ନ ଓ ଆଦରର ସହିତ ସୁରକ୍ଷିତ ଥିବା ବେଳେ ଇଟାଲୀୟମାନେ ଦକ୍ଷିଣର ଢାଲୁ ଅଞ୍ଚଳର ପାଇନ୍ ଜଙ୍ଗଲ ନିଃଶେଷ କରିଦେଲା ବେଳେ ସେମାନେ ଟେର ପାଇ ନଥିଲେ ଯେ ଏହା କରିବା ଦ୍ୱାରା ସେମାନେ ସେମାନଙ୍କ ଅଞ୍ଚଳର ଦୁଗ୍ଧ ଶିଳ୍ପର ଚେର କାଟୁଥିଲେ ଏବଂ ଏହାଠାରୁ ଆହୁରି କମ୍ ଟେର ପାଇଥିଲେ ଯେ ଏହା କରିବା ଦ୍ୱାରା ସେମାନେ ବର୍ଷର ଅଧିକାଂଶ ସମୟ ପାଇଁ ନିଜକୁ ପାର୍ବତ୍ୟ ଝରଣାରୁ ବଞ୍ଚିତ କରିବା ସହ ବର୍ଷା କାଳରେ ଆହୁରି ଅଧିକ ବଢ଼ିର ସମ୍ଭାବନାର ପଥ ସଫା କରିଛନ୍ତି। ଯେଉଁମାନେ ୟୁରୋପରେ ଆଳୁର ପ୍ରସାର ଘଟେଇଲେ ସେମାନେ ଜାଣି ନଥିଲେ ଯେ ଏହି ଶ୍ୱେତସାରଜାତୀୟ କନ୍ଦ (farinaceous tuber) ର ପ୍ରସାର ଘଟେଇବା ସଙ୍ଗେ ସଙ୍ଗେ ସେମାନେ ଗଳଗଣ୍ଡ (scrofula) ରୋଗର ମଧ୍ୟ ପ୍ରସାର ଘଟଉ ଥିଲେ। ଏହି ଭାବେ ଆମକୁ ପ୍ରତିଟି ପଦକ୍ଷେପରେ ମନେ ପକେଇ ଦିଆଯାଉଛି ଯେ ଏକ ବିଦେଶୀ ଜାତି ଉପରେ ଜଣେ ବିଜେତା ଶାସନ କଲା

ଭଳି ଆମେ ପ୍ରକୃତି ବାହାରେ ଠିଆ ହୋଇ ପ୍ରକୃତି ଉପରେ ଶାସନ କରୁନା — ଅପର ପକ୍ଷେ, ଆମର ମାଂସ, ରକ୍ତ ଓ ମସ୍ତିଷ୍କ ସହ ଆମେ ସେଇ ପ୍ରକୃତିର ଅଂଶ ବିଶେଷ ଓ ତାରି ଭିତରେ ହିଁ ଆମର ସ୍ଥିତି ଏବଂ ପ୍ରକୃତି ଉପରେ ଆମର ଆଧିପତ୍ୟ କଥା କହିଲେ କେବଳ ଏତିକି ବୁଝାଏ ଯେ ପ୍ରକୃତିର ନିୟମଗୁଡ଼ିକୁ ଜାଣିବା ଓ ସେଗୁଡ଼ିକୁ ନିର୍ଭୁଲ ଭାବରେ ପ୍ରୟୋଗ କରିବା ସକ୍ଷମତା ଦୃଷ୍ଟିରୁ ଅନ୍ୟାନ୍ୟ ପ୍ରାଣୀମାନଙ୍କ ଅପେକ୍ଷା ଆମେ ସୁବିଧାଜନକ ସ୍ଥିତିରେ ରହିଛେ।

ଏବଂ, ବାସ୍ତବରେ, ଦିନ ପରେ ଦିନ ଆମେ ଏହି ନିୟମଗୁଡ଼ିକୁ ଅଧିକରୁ ଅଧିକ ଭଲ ଭାବେ ବୁଝି ପାରୁଛେ ତଥା ପ୍ରକୃତିର ସ୍ୱାଭାବିକ ଗତିରେ ଆମର ହସ୍ତକ୍ଷେପର ନଗଦାନଗଦି ପରିଣତି ଓ ସୁଦୂର ଭବିଷ୍ୟତର ପରିଣତି ଉଭୟକୁ ଅଧିକରୁ ଅଧିକ ଭଲ ଭାବେ ଦେଖିବା ପାଇଁ ଆମେ ସକ୍ଷମ ହେଉଛେ। ବିଶେଷ କରି, ଚଳିତ ଶତାବ୍ଦୀରେ ପ୍ରାକୃତିକ ବିଜ୍ଞାନଗୁଡ଼ିକର ବିପୁଳ ଅଗ୍ରଗତି ପରେ, ଆମେମାନେ ଅନ୍ତତଃ ପକ୍ଷେ ଆମର ଦୈନନ୍ଦିନ ଉତ୍ପାଦନ କାର୍ଯ୍ୟକଳାପ ମଧ୍ୟ ଦେଇ ଆହୁରି ସୁଦୂର ଭବିଷ୍ୟତର ପରିଣତିଗୁଡ଼ିକୁ ଅନୁଭବ କରି ପାରିବା ଦୃଷ୍ଟିରୁ, ତେଣୁ ସେଗୁଡ଼ିକୁ ନିୟନ୍ତ୍ରଣ କରି ପାରିବା ଦୃଷ୍ଟିରୁ ଆଗ ଅପେକ୍ଷା ଆହୁରି ଭଲ ସ୍ଥିତିରେ ରହିଛେ। କିନ୍ତୁ ଏହି ପ୍ରଗତିର ଧାରା ଯେତେ ଆଗକୁ ଆଗକୁ ଯିବ, ପ୍ରକୃତି ଓ ନିଜ ମଧ୍ୟରେ ଥିବା ଏକତ୍ୱକୁ ମଣିଷମାନେ ସେତେ ବେଶି ଭାବରେ କେବଳ ଅନୁଭବ କରିବେନି, ଜାଣି ବି ପାରିବେ। ପ୍ରାଚୀନ ଗ୍ରୀକ୍ ଓ ରୋମୀୟ ସଂସ୍କୃତିର ପତନ ପରେ ପରେ ମନ ଓ ବସ୍ତୁ, ମଣିଷ ଓ ପ୍ରକୃତି, ଆତ୍ମା ଓ ଦେହ ମଧ୍ୟରେ

ବିରୋଧ ରହିଥିବା ଭଳି ଯେଉଁ ଅର୍ଥହୀନ ତଥା ଅପ୍ରାକୃତିକ ଧାରଣା ୟୁରୋପରେ ମୁଣ୍ଡ ଟେକିଥିଲା ଓ ଖ୍ରୀଷ୍ଟଧର୍ମରେ ଯାହାର ଚରମ ବ୍ୟାଖ୍ୟା ହୋଇଥିଲା, ବର୍ତ୍ତମାନ ସେଭଳି ଧାରଣା ଅସମ୍ଭବ ହୋଇଯିବ।

ଉତ୍ପାଦନ କ୍ଷେତ୍ରରେ ଆମ କାର୍ଯ୍ୟାବଳୀର ସୁଦୂର ଭବିଷ୍ୟତରେ ପ୍ରାକୃତିକ ପରିଣତି କଅଣ ହେବ ତାହାର କଳନା ସମ୍ପର୍କୀତ ସାମାନ୍ୟତମ ଜ୍ଞାନ ପାଇଁ ହଜାର ହଜାର ବର୍ଷର ଶ୍ରମ ଆବଶ୍ୟକ କରିଥିଲା ବେଳେ, ଆମ କାର୍ଯ୍ୟାବଳୀର ସୁଦୂର ଭବିଷ୍ୟତରେ ସାମାଜିକ ପରିଣତି କଅଣ ହେବ ତାହା ଜାଣିବା ତ ଆହୁରି କଷ୍ଟକର ବ୍ୟାପାର। ଆମେ ଆଳୁ ଓ ତାରି ଯୋଗୁଁ ଗଳଗଣ୍ଡ ରୋଗର ପ୍ରସାର କଥା ଆଗରୁ କହି ସାରିଛୁ। ଦେଶ ଦେଶରେ ସାମଗ୍ରୀକ ଭାବେ ଶ୍ରମିକମାନଙ୍କୁ ଆଳୁ ଖାଇ ହିଁ ବଞ୍ଚିବା ସ୍ଥିତିକୁ ଠେଲି ଦେବା ଦ୍ୱାରା ପରିଣତି ସ୍ୱରୂପ ସାଧାରଣ ମଣିଷମାନଙ୍କର ପରିସ୍ଥିତି ଯାହା ହେଲା ତା ସହ, ଅବା ଆଳୁ ଫସଲରେ ମହାମାରୀ ଯୋଗୁଁ ୧୮୪୭ ମସିହାରେ ଆୟାର୍‌ଲେଣ୍ଡ୍‌ରେ ଯେଉଁ ଅକାଳ ପଡ଼ିଲା ତାହା କେବଳ ଆଳୁରୁ, ବା ମୂଖ୍ୟତଃ ଆଳୁରୁ, ପୁଷ୍ଟି ପାଉଥିବା ଦଶ ଲକ୍ଷ ଲୋକଙ୍କୁ ମୃତ୍ୟୁମୁଖକୁ ପଠେଇ ଦେବା ସଙ୍ଗେ ସଙ୍ଗେ ଆଉ କୋଡ଼ିଏ ଲକ୍ଷ ଲୋକଙ୍କୁ ଦେଶ ଛାଡ଼ିବାକୁ ବାଧ୍ୟ କରିଥିଲା। ଏହି ସାମାଜିକ ପରିଣତି ସାମନାରେ ଗଳଗଣ୍ଡର ସ୍ଥାନ ବା କେଉଁଠି? ଯେତେବେଳେ ଆରବୀୟମାନେ ସୁରା କ୍ଷାରଣ ଶିଖିଲେ, ସେତେବେଳେ ସେମାନଙ୍କ ମୁଣ୍ଡକୁ ଏହା କଦାପି ଛୁଇଁ ନଥିଲା ଯେ ଏହା କରିବା ଦ୍ୱାରା ସେମାନେ ସେତେବେଳେ ଯାଏଁ ଅନାବିଷ୍କୃତ ଆମେରିକା ମହାଦେଶର ମୂଳ ଅଧିବାସୀମାନଙ୍କୁ ନିର୍ମୂଳ କରିବା ପାଇଁ ମୂଖ୍ୟ ଅସ୍ତ୍ରଗୁଡ଼ିକ

ମଧ୍ୟରୁ ଗୋଟିଏକୁ ତିଆରି କରୁଛନ୍ତି। ଏବଂ ପରେ ଯେତେବେଳେ କଲମ୍ବସ୍ ଏହି ଆମେରିକାକୁ ଆବିଷ୍କାର କଲେ, ସେ ଜାଣି ନଥିଲେ ଯେ ଏହା କରିବା ଦ୍ୱାରା ସେ ୟୁରୋପରେ ବହୁ କାଳ ପୂର୍ବେ ଲୋପ କରାଯାଇ ଥିବା ଦାସପ୍ରଥାକୁ ପୁଣି ଜୀବନ ଦାନ କରୁଥିଲେ ଓ ନିଗ୍ରୋ ଦାସ ବ୍ୟବସାୟର ଭିତ୍ତି ପକଉଥିଲେ। ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀ କାଳରେ ଯେଉଁ ଲୋକମାନେ ବାଷ୍ପଚାଳିତ ଇଞ୍ଜିନ୍ ତିଆରି କରିବା ପାଇଁ ପରିଶ୍ରମ କରୁଥିଲେ, ସେମାନଙ୍କର ଧାରଣା ନଥିଲା ଯେ ସେମାନେ ଯେଉଁ ଯନ୍ତ୍ର ତିଆରି କରୁଛନ୍ତି ତାହା ବିଶ୍ୱ ସାରା ସାମାଜିକ ସମ୍ପର୍କ କ୍ଷେତ୍ରରେ, ଅନ୍ୟ ଯେ କୌଣସି ଯନ୍ତ୍ର ଅପେକ୍ଷା, ଅଧିକ ବୈପ୍ଳବିକ ପରିବର୍ତ୍ତନ ଆଣି ଦେବ। ବିଶେଷ କରି ୟୁରୋପରେ ତାହା, ମୁଷ୍ଟିମେୟ ଲୋକଙ୍କ ହାତରେ ସମ୍ପତ୍ତି ଠୁଳ କଲା ଓ ଅପାର ଲୋକଙ୍କୁ ନିର୍ଧନ କଲା, ପ୍ରଥମେ ବୁର୍ଜୁଆ ଶ୍ରେଣୀକୁ ସାମାଜିକ ଓ ରାଜନୈତିକ ଅଧିକାର ପ୍ରଦାନ କଲା, ଓ ପରେ ବୁର୍ଜୁଆ ଶ୍ରେଣୀ ଏବଂ ସର୍ବହରା ଶ୍ରେଣୀ ମଧ୍ୟରେ ଶ୍ରେଣୀ ସଂଗ୍ରାମ ଉଭା କରେଇଲା, ଯାହାର ଅନ୍ତ କେବଳ ବୁର୍ଜୁଆ ଶ୍ରେଣୀର ପତନ ତଥା ସମସ୍ତ ଧରଣର ଶ୍ରେଣୀ ବିରୋଧର ଉଚ୍ଛେଦ ଦ୍ୱାରା ହିଁ ସମ୍ଭବ। କିନ୍ତୁ ଏହି କ୍ଷେତ୍ରରେ ମଧ୍ୟ ଦୀର୍ଘ ମିଆଦି ତଥା ଅନେକ ବେଳେ ନିଷ୍ଠୁର ଅଭିଜ୍ଞତା ଦ୍ୱାରା ଏବଂ ଐତିହାସିକ ତଥ୍ୟର ସଂଗ୍ରହ ଓ ବିଶ୍ଳେଷଣ ଦ୍ୱାରା ଆମେ ଆମର ଉତ୍ପାଦନ କାର୍ଯ୍ୟାବଳୀର ପରୋକ୍ଷ, ଆହୁରି ସୁଦୂର ଭବିଷ୍ୟତର, ସାମାଜିକ ପରିଣତିର ସ୍ପଷ୍ଟ ଚିତ୍ର ପାଇବା ପାଇଁ ଆସ୍ତେ ଆସ୍ତେ ଶିଖୁଛେ, ଏବଂ ତା ସଙ୍ଗେ ସଙ୍ଗେ ଏହି ପରିଣତିଗୁଡ଼ିକୁ ନିୟନ୍ତ୍ରଣ ଓ ନିୟମିତ କରିବା ସୁଯୋଗ ପାଉଛେ।

ହେଲେ, ଏହି ନିୟମିତକରଣ କେବଳ ଜ୍ଞାନ ଅପେକ୍ଷା ଆଉ କିଛି ଅଧିକ ଆବଶ୍ୟକ କରେ। ଏହା ଅଦ୍ୟାବଧି ଗଢ଼ି ଆସିଥିବା ଉତ୍ପାଦନ ଧାରାରେ ସମ୍ପୂର୍ଣ୍ଣ ବିପ୍ଳବର ଆବଶ୍ୟକତା ସଙ୍ଗେ ସଙ୍ଗେ ସମଗ୍ର ସମସାମୟିକ ସାମାଜିକ ବ୍ୟବସ୍ଥାରେ ବୈପ୍ଳବିକ ପରିବର୍ତ୍ତନ ଆବଶ୍ୟକ କରେ।

ଶ୍ରମର କେବଳ ଅବିଳମ୍ବ ତଥା ପ୍ରତ୍ୟକ୍ଷ ରୂପେ ଲାଭଦାୟକ ପରିଣତିଗୁଡ଼ିକୁ ହାସଲ କରିବା ହିଁ ଅଦ୍ୟାବଧି ଗଢ଼ି ଆସିଥିବା ସମଗ୍ର ଉତ୍ପାଦନ ଧାରାଗୁଡ଼ିକର ଲକ୍ଷ୍ୟ ହୋଇ ଆସିଛି। ଅନ୍ୟାନ୍ୟ ଫଳାଫଳକୁ, ଯାହା କେବଳ ପରେ ଦେଖାଦେଇ କ୍ରମଶ ପୁନରାବୃତ୍ତି ଓ ପୁନରାବୃତ୍ତିର ସଂଖ୍ୟା ବୃଦ୍ଧି ମାଧ୍ୟମରେ କାର୍ଯ୍ୟକ୍ଷମ ହୋଇଥାଏ, ସମ୍ପୂର୍ଣ୍ଣରୂପେ ଉପେକ୍ଷା କରା ଯାଉଥିଲା। ଜମିର ମୂଳ ସାମୁହିକ ମାଲିକାନା, ଏକ ପକ୍ଷରେ, ମଣିଷମାନଙ୍କର ବିକାଶର ଏପରି ଏକ ସ୍ତର ସହ ଯୋଡ଼ି ହୋଇ ରହିଥିଲା ଯହିଁରେ ସାଧାରଣ ଭାବରେ ସେମାନଙ୍କ ହାତପାଆନ୍ତାରେ ପ୍ରତ୍ୟକ୍ଷ ରୂପରେ ଯାହା ମିଳୁଥିଲା ତହିଁରେ ହିଁ ସେମାନଙ୍କର ଦିଗନ୍ତ ସୀମିତ ରହୁଥିଲା ଏବଂ, ଅନ୍ୟ ପକ୍ଷରେ, ଏହି ଆଦିମ ଧରଣର ଅର୍ଥନୀତିର ସମ୍ଭାବିତ କୁଫଳର ନିରାକରଣ ପାଇଁ ଅତିରିକ୍ତ ଜମି ରହିଥିବା କଥା ଧରି ନିଆ ଯାଇଥିଲା। ଯେତେବେଳେ ଏହି ଉଦ୍‌ବୃତ୍ତ ଜମି ନିଃଶେଷ ହୋଇଗଲା, ସେତେବେଳେ ଏହି ସାମୁହିକ ମାଲିକାନାର ମଧ୍ୟ ଅବନତି ଘଟିଲା। ହେଲେ, ସମସ୍ତ ଧରଣର ଉନ୍ନତତର ଉତ୍ପାଦନ ଜନଗଣଙ୍କୁ ବିଭିନ୍ନ ଶ୍ରେଣୀରେ ବିଭାଜିତ କରେ ଓ ତଦ୍ୱାରା ଶାସକ ଏବଂ ଉତ୍ପୀଡ଼ିତ ଶ୍ରେଣୀ ମଧ୍ୟରେ ଶତ୍ରୁତା ଜାତ କରେ। ଉତ୍ପୀଡ଼ିତ ଜନଗଣଙ୍କର ଜୀବନଧାରଣ ପାଇଁ ନିହାତି ଆବଶ୍ୟକ ବସ୍ତୁ

ଯୋଗେଇବାରେ ଉତ୍ପାଦନ ଆଉ ସୀମିତ ନ ରହିବା କାରଣରୁ ଶାସକ ଶ୍ରେଣୀର ସ୍ୱାର୍ଥ ଉତ୍ପାଦନର ଚାଳନା ଶକ୍ତି ହେଲା। ଆଜି ପଶ୍ଚିମ ୟୁରୋପରେ ବଳବତ୍ତର ଥିବା ପୁଞ୍ଜିବାଦୀ ଉତ୍ପାଦନ ଧାରାରେ ଏହା ପୂର୍ଣ୍ଣତଃ କାର୍ଯ୍ୟକାରୀ ହେଉଛି। ଉତ୍ପାଦନ ଓ ବିନିମୟ କ୍ଷେତ୍ରରେ ଆଧିପତ୍ୟ ବିସ୍ତାର କରିଥିବା ବ୍ୟକ୍ତି ବିଶେଷ ପୁଞ୍ଜିପତିମାନେ ସେମାନଙ୍କର କାର୍ଯ୍ୟକଳାପର ନିହାତି ପ୍ରତ୍ୟକ୍ଷ ଉପଯୋଗୀ ପରିଣତି ମଧ୍ୟରେ ହିଁ ନିଜକୁ ବ୍ୟସ୍ତ ରଖିବା ପାଇଁ ସକ୍ଷମ। ଅଥଚ୍ ଉତ୍ପାଦିତ ହେଉଥିବା ଓ ବିନିମୟ କରା ଯାଉଥିବା ବସ୍ତୁର ଉପଯୋଗୀତା ଦୃଷ୍ଟିରୁ ବିଚ଼ାର କଲେ, ଏହି ଉପଯୋଗୀ ପରିଣତି, ବାସ୍ତବରେ, ଅନ୍ତରାଳକୁ ହଟିଯାଏ, ଏବଂ ବିକ୍ରି ପରର ଲାଭ ହିଁ ଏକମାତ୍ର ପ୍ରୋତ୍ସାହନ ହୋଇ ରହିଯାଏ।[୧୩]

* * * * *

ପୁରାତନ ରାଜନୈତିକ ଅର୍ଥଶାସ୍ତ୍ର — ଅର୍ଥାତ୍, ବୁର୍ଜୁଆ ଶ୍ରେଣୀର ସାମାଜିକ ବିଜ୍ଞାନ — ଉତ୍ପାଦନ ଓ ବିନିମୟ କ୍ଷେତ୍ରରେ ମଣିଷର କାର୍ଯ୍ୟକଳାପର ବାସ୍ତବରେ ଅଭିପ୍ରେତ ସାମାଜିକ ପରିଣତିଗୁଡ଼ିକର ହିଁ ମୂଖ୍ୟତଃ ଅନୁସନ୍ଧାନ କରିଥାଏ। ଏହା ଯେଉଁ ସାମାଜିକ ସଂଗଠନର ତାତ୍ତ୍ୱିକ ପରିପ୍ରକାଶ ତା ସହ ସମ୍ପୂର୍ଣ୍ଣ ରୂପେ ଖାପ ଖାଉଛି। ବ୍ୟକ୍ତିଗତ ଭାବେ ପୁଞ୍ଜିପତିମାନେ ଯେହେତୁ କେବଳ ନଗଦ ଲାଭ ପାଇଁ ଉତ୍ପାଦନ ଓ ବିନିମୟ ପ୍ରକ୍ରିୟାରେ ଜଡ଼ିତ ରହୁଛନ୍ତି, କେବଳ ନିହାତି ହାତପାଆନ୍ତାରେ ଥିବା, ଅତ୍ୟନ୍ତ ପ୍ରତ୍ୟକ୍ଷ ଫଳାଫଳଗୁଡ଼ିକୁ ହିଁ ଏହା ବିଚ଼ାରକୁ ନେବା ପାଇଁ ବାଧ୍ୟ। ଯେଉଁଯାଏ ଜଣେ ଉତ୍ପାଦନକାରୀ ବା ଜଣେ ବ୍ୟବସାୟୀ ଉତ୍ପାଦିତ

ହୋଇଥିବା ଅବା କିଣା ଯାଇଥିବା ଦ୍ରବ୍ୟକୁ ଚିରାଚରିତ ଆଶାନୁରୂପ ଲାଭରେ ବିକ୍ରି କରି ପାରୁଛି, ସେ ସନ୍ତୁଷ୍ଟ। ତା ପରେ ସେହି ଦ୍ରବ୍ୟର ବା ତାକୁ କିଣିବା ଲୋକର କଅଣ ହେଲା ତାକୁ ନେଇ ସେ ଚିନ୍ତିତ ନୁହେଁ। ସେଇ ଏକା କାର୍ଯ୍ୟକଳାପର ପ୍ରାକୃତିକ ପରିଣତି କ୍ଷେତ୍ରରେ ମଧ୍ୟ ସେଇ ଏକା କଥା ପ୍ରଯୁଜ୍ୟ। ସ୍ପେନ୍‌ରୁ କ୍ୟୁବାକୁ ଆସି ବଗିଚ଼ା ମାଲିକମାନେ ପର୍ବତ ଢାଲୁରେ ଥିବା ଜଙ୍ଗଲକୁ ଜାଳି ଦେଲେ ଓ ତାହାର ପାଉଁଶରୁ ଅତ୍ୟନ୍ତ ଲାଭଜନକ କଫି ଗଛର କେବଳ *ଗୋଟିଏ* ପିଢ଼ି ପାଇଁ ହିଁ ସାର ପାଇଲେ। ହେଲେ ପରେ ଗ୍ରୀଷ୍ମମଣ୍ଡଳର ଘୋର ବର୍ଷା ଉପର ସ୍ତରର ଅସୁରକ୍ଷିତ ମାଟିକୁ ଧୋଇ ଦେଇ ନଙ୍ଗଳା ପଥରପାହାଡ଼ ଛାଡ଼ି ଦେଲା। ସେମାନେ କାହାର ପରୁଆ କଲେ! ସମାଜ କ୍ଷେତ୍ରରେ ଯେପରି ପ୍ରକୃତି କ୍ଷେତ୍ରରେ ବି ସେପରି। ବର୍ତ୍ତମାନର ଉତ୍ପାଦନ ଧାରା କେବଳ ପ୍ରତ୍ୟକ୍ଷ, ନିହାତି ନିଶ୍ଚିତ ପରିଣତିକୁ ନେଇ ମୁଖ୍ୟତଃ ଚିନ୍ତିତ। ହେଲେ ପରେ ଆଶ୍ଚର୍ଯ୍ୟ ପ୍ରକାଶ କରାଯାଇ ଥାଏ ଯେ ଏଇ ଲକ୍ଷ୍ୟ ନେଇ କରା ଯାଇଥିବା କାର୍ଯ୍ୟକଳାପର ଆହୁରି ସୁଦୂର ଭବିଷ୍ୟତର ପରିଣତିଗୁଡ଼ିକ ସମ୍ପୂର୍ଣ୍ଣ ରୂପେ ଭିନ୍ନ, ଏପରିକି ଅଧିକାଂଶ ସ୍ଥଳେ ସମ୍ପୂର୍ଣ୍ଣ ରୂପେ ବିପରୀତ, ଚରିତ୍ରର ହୋଇଥାଏ। ଯୋଗାଣ ଓ ଚାହିଦା ମଧ୍ୟରେ ଥିବା ସୁସଙ୍ଗତି ଠିକ୍ ତାର ବିପରୀତକୁ ରୂପାନ୍ତରିତ ହୋଇଯାଏ। ଶିଳ୍ପ କ୍ଷେତ୍ରରେ ପ୍ରତି ଦଶ ବର୍ଷରେ ପୁନରାବୃତ୍ତି ହେଉଥିବା ମାନ୍ଦାବସ୍ଥାର ଧାରା ତାହା ହିଁ ଦର୍ଶାଏ। ଏପରିକି ଜର୍ମାନୀ ମଧ୍ୟ ତାର କିଛିଟା ପ୍ରାଥମିକ ଅନୁଭୂତି ''ବିପର୍ଯ୍ୟୟ'' ("crash") ରେ[୧୪] ପାଇ ସାରିଛି। ଯେତେବେଳେ ସମସ୍ତ ସମ୍ପତ୍ତି ଅଧିକ, ଆହୁରି ଅଧିକ ଭାବରେ ଅଣ-ଶ୍ରମିକମାନଙ୍କ ହାତରେ ଠୁଳ

ହେଉଛି, ସେତେବେଳେ ନିଜର ଶ୍ରମ ଭିତ୍ତିକ ବ୍ୟକ୍ତିଗତ ମାଲିକାନାର ଅନିବାର୍ଯ୍ୟ ପରିଣତି ହେବ ଶ୍ରମିକମାନଙ୍କ ବେଦଖଲ....[୧୫]

## ଟିପ୍ପଣୀ

୧. ଭାରତ ମହାସାଗର ଆଜି ଯେଉଁଠି ଅଛି ସେଠାରେ ମାଡ଼ାଗାସ୍କାର ଠାରୁ ଭାରତ ଦେଇ ସୁମାତ୍ରା ପର୍ଯ୍ୟନ୍ତ ବିସ୍ତାରୀତ ଅଞ୍ଚଳରେ ''ଲେମୁରିଆ'' ନାମକ ଏକ ମହାଦେଶ ରହିଥିଲା ଓ ପରେ ବୁଡ଼ିଗଲା ବୋଲି ଏକ ପରିକଳ୍ପନା ୧୮୭୦ ମସିହାରେ ବ୍ରିଟିଶ୍ ପ୍ରାଣୀଭୂଗୋଳବିତ୍ ଫିଲିପ୍ ଲୁଟ୍ଲେ ସ୍କ୍ଲେଟର ଉପସ୍ଥାପନା କରିଥିଲେ। — ଇଂରାଜି ସଂସ୍କରଣର ସମ୍ପାଦକ।

୨. See Charles Darwin, The Descent of Man, and Selection in Relation to Sex, Vol. 1, Ch. VI. — ଇଂରାଜି ସଂସ୍କରଣର ସମ୍ପାଦକ।

୩. ଅର୍ଥାତ୍, ମାନବ ସଦୃଶ ଲାଙ୍ଗୁଳବିହୀନ ବାନର ଜାତୀୟ ପ୍ରାଗ୍‌ମାନବ ଅର୍ଥରେ — ଗରିଲା, ସିମ୍ପାଞ୍ଜି, ଓରାଂଉଟାନ୍ ଓ ଗିବନ୍‌ମାନେ। — ନୀ. ସା.

୪. ଯଥା: ଚିଡ଼ିଆଖାନାରେ ଅବା ଗବେଷଣାଗାରରେ। — ନୀ. ସା.

୫. ରାଫେଲ୍ (୬-୪-୧୪୮୩ ଠାରୁ ୬-୪-୧୫୨୦) — ରେନେସାଁ ଯୁଗର ଜଣେ ମହାନ ଇତାଲୀୟ କଳାକାର। ସେ ବହୁତ ବିଶ୍ୱବିଖ୍ୟାତ ଚିତ୍ର ଆଙ୍କି ଯାଇଛନ୍ତି, ତେବେ ମେଡୋନା ଚିତ୍ରଗୁଡ଼ିକ ପାଇଁ ସେ ଅତି ପ୍ରସିଦ୍ଧ। — ନୀ. ସା.

୬. ବେର୍ଟେଲ ଥର୍ଭାଲ୍ଡ୍‌ଜେନ୍ (୧୩-୧୧-୧୭୬୮ ଅବା ୧୯-୧୧-୧୭୭୦ ଠାରୁ ୨୪-୩-୧୮୪୪) — ସେ ଥିଲେ ପ୍ରଥମ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଡାନିଶ୍ କଳାକାର। ତାଙ୍କ ସମୟରେ ତାଙ୍କ ଭାସ୍କର୍ଯ୍ୟ ବହୁତ ବିଖ୍ୟାତ ଥିଲା ଓ ସେ ଯୀଶୁ ଖ୍ରୀଷ୍ଟ ତଥା ତାଙ୍କର ବାର ଶିଷ୍ୟଙ୍କର ପ୍ରତିମୂର୍ତ୍ତି ସହ ତାଙ୍କ ନିଜ ସମୟର ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କର ପ୍ରତିକୃତି ଖୋଦେଇ କରିଥିଲେ। — ନୀ. ସା.

୭. ନିକୋଲ ପାଗାନିନି (୨୭-୧୦-୧୭୮୨ ଠାରୁ ୨୭-୫-୧୮୪୦), ଇତାଲୀୟ ସଙ୍ଗୀତଜ୍ଞ — ୟୁରୋପର ବହୁ ଦେଶରେ ସେ ତାଙ୍କ ସଙ୍ଗୀତର ଯାଦୁ ଶୁଣେଇ ପ୍ରତିଷ୍ଠିତ ହୋଇଥିଲେ। ଶେଷ ଜୀବନ ସେ ପ୍ୟାରିସ୍‌ରେ କଟେଇ ଥିଲେ। — ନୀ. ସା.

୮. Charles Darwin, On the Origin of Species..., Ch. 1-5. — ଇଂରାଜି ସଂସ୍କରଣର ସମ୍ପାଦକ।

୯. ଏହି କ୍ଷେତ୍ରର ଜଣେ ବିଖ୍ୟାତ, ପ୍ରଭାବଶାଳୀ ବିଜ୍ଞବ୍ୟକ୍ତି ସାର୍ ୱିଲିୟମ୍ ଥମ୍‌ସନ୍ ଗଣନା କରି କହିଛନ୍ତି ଯେ ଗଛଲତା ଓ ପ୍ରାଣୀମାନେ ବଞ୍ଚି ରହି ପାରିବା ଭଳି ଅବସ୍ଥା ପାଇଁ ଧରାପୃଷ୍ଠଟି ଯଥେଷ୍ଟ ପରିମାଣରେ ଥଣ୍ଡା

ହେବା ଠାରୁ ଆଜି ଯାଏଁ ହୁଏତ ଦଶ କୋଟିରୁ କିଛି ଅଧିକ ବର୍ଷ ଅତିବାହିତ ହୋଇଥାଇ ପାରେ। — ଏଙ୍ଗେଲ୍ସଙ୍କ ଟିପଣୀ।

(ଦେଖନ୍ତୁ: W. Thomson, "Review of evidence regarding physical condition of the earth...". In *Nature*, Vol. XIV, No. 359, September 14, 1876, pp. 427-31. — ଇଂରାଜି ସଂସ୍କରଣର ସମ୍ପାଦକ।)

୧୦. ଯେକୋବ ଗ୍ରିମ୍‌ଙ୍କ Deutsche Rechtsalterthümer, Göttingen, 1928, p.488 ରେ ଉଦ୍ଧୃତ କରା ଯାଇଥିବା ଜର୍ମାନ ଧର୍ମଯାଜକ ଲାବିଓ ନୋଟ୍‌କେର (ପ୍ରାୟ ୯୫୨-୧୦୨୨) ଙ୍କ ସାକ୍ଷ୍ୟ କଥା ଏଙ୍ଗେଲ୍ସ୍ ଏଠାରେ କହୁଛନ୍ତି। — ଇଂରାଜି ସଂସ୍କରଣର ସମ୍ପାଦକ।

୧୧. ଅଣ୍ଡାର ଧଳା ଅଂଶ ଜାତୀୟ ବସ୍ତୁ। — ନୀ. ସା.

୧୨. Ennoblement (ମହତ୍ୱ) ପାଣ୍ଡୁଲିପିର ମାର୍ଜିନରେ ଲେଖାଥିବା ଟିପଣୀ। — ଇଂରାଜି ସଂସ୍କରଣର ସମ୍ପାଦକ।

୧୩. ଏହି ଲେଖାର ପାଣ୍ଡୁଲିପିଟି ଏହିଠାରେ ହିଁ ଶେଷ ହେଇ ଯାଇଛି। ଏହା ପରେ ଯାହା ଦିଆ ଯାଇଛି ତାହା ଅନ୍ୟ ଖଣ୍ଡେ କାଗଜରେ ଲେଖାଥିଲା, ଯାହା ଉପରେ ଅନ୍ୟ କାହାର ହାତଲେଖା ଟିପଣୀରେ ଏହା ପ୍ରଥମ ଚିଠାର ଶେଷ ପୃଷ୍ଠା ବୋଲି କୁହା ଯାଇଛି। — ଇଂରାଜି ସଂସ୍କରଣର ସମ୍ପାଦକ।

୧୪. ଏଙ୍ଗେଲ୍ସ ଏଠାରେ ୧୮୭୩ ମସିହାର ବିଶ୍ୱ ଅର୍ଥନୈତିକ ସଙ୍କଟ କଥା କହୁଛନ୍ତି। ଫ୍ରାନ୍ସ-ପ୍ରୁସିଆ ଯୁଦ୍ଧର ପରବର୍ତ୍ତୀ କାଳରେ ଅର୍ଥନୈତିକ କାର୍ଯ୍ୟକଳାପର ଯେଉଁ ଦ୍ରୁତ ପ୍ରସାରଣ ଘଟିଥିଲା, ତାର ଅନ୍ତ ହୋଇଥିଲା ବିପଜ୍ଜନକ ବିପର୍ଯ୍ୟରେ, ଯାହାର ଶିକାର ସେହି ବର୍ଷ ମଇ ମାସରେ ଜର୍ମାନୀ ହୋଇଥିଲା। — ଇଂରାଜି ସଂସ୍କରଣର ସମ୍ପାଦକ।

୧୫. ପାଣ୍ଡୁଲିପିଟି ଏଇଠି ଅଟକି ଯାଇଛି। — ଇଂରାଜି ସଂସ୍କରଣର ସମ୍ପାଦକ।